# ଗୋବର୍ଦ୍ଧନଲୀଳା

## ନାଟକ।





ପ୍ରକାଶକ :—

ଶ୍ରୀ ଜଗନ୍ନାଥ ଦାସ।

# ଗୋବର୍ଦ୍ଧନ ଲୀଳା ନାଟକ ।



ବ୍ରଜବାସୀ
ଶ୍ରୀ ବୈଷ୍ଣବଚରଣ ଦାସ ବାବାଜୀଙ୍କ ଦ୍ୱାରା
ସରଳ ଭାଷାରେ ପଦ୍ୟାନୁବାଦ ।

ଶ୍ରୀ ଦାଶରଥି ଦାସଙ୍କ ଦ୍ୱାରା ପ୍ରକାଶିତ ।



ପ୍ରଥମ ସଂସ୍କରଣ

Printed by B. S. Das,
The Mukur Press,
CUTTACK,
1928.

ମୂଲ୍ୟ ୧ ୦ ୵ ଡକଅଣା ଗାଡ଼ା ।

# ଭୂମିକା



## ପ୍ରକାଶକର ଗୋଟିଏ କଥା ।

ନାଟକ ଅଧ୍ୟୟନରେ ରୁଚି ଓ ଚରିତ୍ର ବିଶେଷ ମାର୍ଜିତ ହୁଏ, ଏଣୁ ଶିକ୍ଷିତ ବ୍ୟକ୍ତି ମାନେହିଁ ନାଟକର ଆଦର କରିଥାଆନ୍ତି । ଅଧୁନା ବ୍ରଜଲୀଳା ଗୀତାଭିନୟ ଓ ନାଟକର ଯେପରି ଆଦରବଢ଼ି ଅଛି, ତହିଁରେ ବାସ୍ତବିକ ଅତି ଆନନ୍ଦର କଥା । ସେଥିଯୋଗୁଁ ମୁଁ ଉକ୍ତ ବ୍ରଜଲୀଳା ନାଟକ ଗୁଡ଼ିକ ପ୍ରକାଶ କରାଇବିବୋଲି କେତେକ ବର୍ଷହେଲା ନାଟ୍ୟକାର ଶ୍ରୀଯୁକ୍ତ ବ୍ରଜବାସୀ ବାବାଜୀ ବୈଷ୍ଣବଚରଣ ଦାସ ମହାଶୟଙ୍କ ରଚିତ ଶ୍ରୀକୃଷ୍ଣଙ୍କ ଜନ୍ମଲୀଳା ଠାରୁ ଆରମ୍ଭକରି ବାଲ୍ୟ, ପୌଗଣ୍ଡ, କୈଶୋର ଲୀଳାମାନ କ୍ରମେ ପ୍ରକାଶ କରିବି-ବୋଲି ମନେ କରିଥିଲି, ତଦ୍ଧାମସ୍ତୁ ଭଗବାନଙ୍କ କୃପାରୁ ବାବାଜୀ ମହାଶୟ ତାଙ୍କ ରଚିତ ନାଟକ ଗୁଡ଼ିକ ମୁଦ୍ରଣ କରାଇବା ନିମିତ୍ତ ଅନୁମତି ପ୍ରଦାନ କରିଅଛନ୍ତି । ସେଥିମଧ୍ୟରୁ ସମସ୍ତ ପ୍ରକାଶିତ ହୋଇଅଛି, ବର୍ତ୍ତମାନ ବ୍ରଜଲୀଳା ନାଟକ ଅଧିକାରୀମାନଙ୍କ ଅନୁରୋଧ ମତେ ଏହି ଗୋବର୍ଦ୍ଧନଲୀଳା ନାଟକ ଖଣ୍ଡିକ ମୁଦ୍ରଣ କରାଇବାକୁ ବାଧ୍ୟ ହେଲି । ଇତି ।

ପ୍ରକାଶକ— ଶ୍ରୀ ଦାଶରଥି ଦାସ ।



## ନାଟ୍ୟୋଲ୍ଲିଖିତ ଅଭିନେତା ଓ ଅଭିନେତ୍ରୀମାନଙ୍କ ପରିଚୟ ।

### ପୁରୁଷ ଗଣ ।

ଇନ୍ଦ୍ର, ବୃଦ୍ଧଷଣ୍ଢ, ମାରୁଳ, ନାରଦ, ଶ୍ରୀକୃଷ୍ଣ, ବଳରାମ, ସୁବଳ, ସୁଦାମ, ମଧୁମଙ୍ଗଳ, ନନ୍ଦ, ଉପନନ୍ଦ, ବସୁନନ୍ଦ, ସୁନନ୍ଦ, ଚଣ୍ଡୁର, ଗୋପାଳଗଣ, ଅନେକ ବ୍ରଜବାଳକ, ସଦା, ଗଦା, ବଦା, ନଧିଆ, ହିଡ଼ିଆ ।

### ସ୍ତ୍ରୀ ଗଣ ।

ଶ୍ରୀରାଧା, ଲଳିତା, ବିଶାଖା, ବୃନ୍ଦା, କମଳା, ବିମଳା, ଯଶୋଦା ରାଣୀ ଓ ବ୍ରଜର ଅନ୍ୟାନ୍ୟ ଗୋପିକାଗଣ ।

ଶ୍ରୀଶ୍ରୀ ରାଧାଗୋବିନ୍ଦ ରାସଲୀଳା
ସତ୍ୟବାଦୀ ।
ତାଂ । ୭ । ୨୮

କୃଷ୍ଣଭକ୍ତ କୃପାଭିକ୍ଷୁ କାଙ୍ଗାଳ
ବ୍ରଜବାସୀ
ଶ୍ରୀ ବୈଷ୍ଣବଚରଣ ଦାସ ।
ବାବାଜୀ ।



# ଗୋବର୍ଦ୍ଧନ ଲୀଳା ନାଟକ ।



## ପ୍ରଥମ ଅଙ୍କ ।

### ପ୍ରଥମ ଦୃଶ୍ୟ—ଅମରାବତୀ ।

(ଇନ୍ଦ୍ର, ବୃହସ୍ପତି, ମାରୁତି ଓ ପ୍ରତିହାରୀମାନଙ୍କ ସ୍ବ ସ୍ବ ଆସିନ
ଅପ୍ସରାମାନଙ୍କ ନୃତ୍ୟ ଓ ଗାନ)

### ଗୀତ ।

(ମୁଁ ଯମୁନା ଯିବନାହିଁ ଗୋ ବୃନ୍ଦେ)

ଆଉ ରହିବ ନାହିଁ ଏ ଭୟ ଗୋ ।
ପତିତପାବନ ମର୍ତ୍ତେ ହୋଇଛନ୍ତି ଉଦୟ ଗୋ । ପଦ ।

ନନ୍ଦରୂପେ ନାରାୟଣ, ଉଦ୍ଧାରନ୍ତି ତ୍ରିଭୁବନ,
ଦେବତାମାନଙ୍କ ଦୁଃଖ କରନ୍ତି ସେ କ୍ଷୟ ଗୋ । ୧ ।

ଶୋକ ତାପ ଦୂର ହେବ, ଆନନ୍ଦ ସୋତ ବହିବ,
କଂସକୁ ନାଶି ମାଧବ, ଘୋଷାଇବେ ଜୟ ଗୋ । ୨ ।

ଦର୍ପ ଦଳିବା ନିମନ୍ତେ, ପ୍ରଭୁ ଜନମନ୍ତି ମର୍ତ୍ତ୍ୟେ,
ମାରିବା ତାରିବା ଛଳେ ଦେଖାନ୍ତି ଅଭିନୟ ଗୋ । ୩ ।

ଶୁଣ କଂସ ଦୁରାଚାର, ଅନାଥ କରେ ଅପାର.
ସ୍ୱର୍ଗେ ରଜା ହେବ ବୋଲି ମନେକରନ୍ତୁ ଅସୁ ଗୋ । ୪ ।

(ସମସ୍ତରେ ଗାନ ସହନୃତ୍ୟ ଅଭିନୟ)

ମାତୁଳି- ଆହା ! ବସନ୍ତ ସମୟରେ କୋକିଳ କଣ୍ଠ ଜନିତ ମଧୁର ସ୍ୱର ଅପ୍ସରମାନେ ଠିକ ସମୟୋଚିତ ଗୀତ ଗାନକଲେ, ପ୍ରଭୁ ! ତୋଲିକପୁରୀ ଶୂନ୍ୟକର ପୃଥିବୀର ଭାର ନାଶକରିବା ନିମିତ୍ତ ନନ୍ଦନନ୍ଦନରୂପେ ମର୍ତ୍ତ୍ୟମଣ୍ଡଳରେ ଅବତୀର୍ଣ୍ଣ ହୋଇଛନ୍ତି, ସେହି ଉପଲକ୍ଷକରି, ସାଧାରଣ ସୁଖ-ମତ୍ତ ମନୁଷ୍ୟଙ୍କୁ ଆଶ୍ୱାସ ଦେବାର ନିମିତ୍ତ ଏହି ଗାନଟି ରଚିତ ହୋଇଥିଲା । ଆହା ସଙ୍ଗୀତର କି ଅନିର୍ବଚନୀୟ କ୍ଷମତା, ଏହା ପ୍ରଭାବରେ ନିତାନ୍ତ ପାଷଣ୍ଡର କଠିନହୃଦୟ ଦ୍ରବୀଭୂତ ହୋଇଯିବ । ଦାରୁଣ ଅପତ୍ୟ ଶୋକର ବିଷମ-ଜ୍ୱାଳା ମଧ୍ୟ ପ୍ରଶମିତ ହେବା ଅସମ୍ଭବ ନୁହେଁ । କିନ୍ତୁ ଅନେକ—କମୂତ ନିତାନ୍ତ ଲଘୁଚେତା, ମନୁଷ୍ୟମାନେ ଏହି ସ୍ୱର୍ଗୀୟ ପବିତ୍ର ବସ୍ତୁକୁ ନିତାନ୍ତ କଳୁଷିତ ଭାବରେ ବ୍ୟବହାର କରି ଥାଆନ୍ତି ।

ଇନ୍ଦ୍ର—ମାତୁଳି ! ତୁମ୍ଭେ ଯାହା କହିଲ—ସେକଥା ସତ୍ୟ, କିନ୍ତୁ ସାମାନ୍ୟ ଜଳ ଯେମନ୍ତ କୁସୁମ ସଂସର୍ଗରେ ସୁରଭିତ ହୁଏ, ସେହିପରି ପ୍ରଭୁଙ୍କ କୃପାରେ ମଧ୍ୟ ସୁ ସୁ ବିଶ୍ୱାସ ପ୍ରଭାବେ ସେହି କ୍ଷୀଣମତି ମନୁଷ୍ୟମାନେ ଏହିଥର ଅମରତ୍ୱ ଅବଧି ଲଭିବାରେ ସମର୍ଥ ହେବେ । ଯେଛେ ତାଙ୍କର ସୃଷ୍ଟିମଧ୍ୟ ସଂସାର ଭ୍ରମର ତମଃ କାଳେ ଆଛନ୍ନ ହୁଏ, ଯେଛେ ନିର୍ଘୋରେ ପଥ ମାନବର ପକ୍ଷେ ଏକାବାରେ ରୁଦ୍ଧ ହୁଏ, ଯେଛେ ଦୁର୍ବଳ ପ୍ରବଳ କର୍ତ୍ତୃକ ନିପୀଡ଼ିତ ହୁଏ, ସେ ସମୟେ ସେହି ପରମ-ପୁରୁଷ ସର୍ବ ବ୍ୟାପୀ ସର୍ବଜ୍ଞ ହୋଇ ବାମ କରୂପଧାରଣ

କରିଛନ୍ତି, ହର୍ଷ, ବିଷାଦ, ଶୋକ, ଦୁଃଖ ପ୍ରଭୃତି ଜଗତର ଗୁଣଗ୍ରାମର ବଶୀଭୂତ ହୋଇଛନ୍ତି, ତା, ନହେଲେ ସଂସାର-ରଙ୍ଗଭୂମିରେ ଏପରି ଅପୂର୍ବ ଅଭିନୟ କରିବାର ତାଙ୍କର ଆବଶ୍ୟକ କଅଣ ଥିଲା ?

ବୃହସ୍ପତି—ସେହି ଲୀଳାମୟଙ୍କର ଅପୂର୍ବ ଲୀଳାକାଣ୍ଡର ମର୍ମ୍ମ ଉପଲବ୍ଧି କରିବା ଆମ୍ଭମାନଙ୍କର ଅବଧି କ୍ଷମତାତୀତ; ତେବେ ଉଦ୍ଦେଶ୍ୟ ହୀନ କୌଣସି କାର୍ଯ୍ୟହିଁ ସେହି ପରାତ୍ପର ପରମ ପୁରୁଷଙ୍କ ଦ୍ୱାରା ଅନୁଷ୍ଠିତ ହୋଇପାରେ ନାହିଁ । କେବଳ ମାତ୍ର ଭ୍ରାନ୍ତ ଜୀବର ମଙ୍ଗଳ ନିମନ୍ତେ ସେହି ମଙ୍ଗଳ-ମୟ ଭଗବାନ୍ କାର୍ଯ୍ୟକ୍ଷେତ୍ରରେ ଅବତୀର୍ଣ୍ଣ ହୁଅନ୍ତି ।

ଇନ୍ଦ୍ର—ତାହା ଠିକ୍ ସଂସାର ମଧ୍ୟରେ ଯେତେବେଳେ କୌଣସି ଦୁରାତ୍ମା କାଳପ୍ରେରିତ ହୋଇ ଦେବ ଦ୍ୱିଜମାନଙ୍କ ଉପରେ ବିଦ୍ୱେଷ ଉତ୍ପନ୍ନ ହୁଅନ୍ତି, ବାହୁବଳରେ ନିରୀହ ବ୍ୟକ୍ତିମାନଙ୍କ ଉପରେ ଉତ୍ପୀଡ଼ନ କରନ୍ତି, ସେହି ସମୟରେ ଭକ୍ତବତ୍ସଳ ଶ୍ରୀହରି ମାନବମୂର୍ତ୍ତି ପରିଗ୍ରହକରି ଜଗତରେ ଶାନ୍ତି ସ୍ଥାପନ କରନ୍ତି । ଏହିଥର କଂସ ପ୍ରଭୃତି ଦୁର୍ଦ୍ଦାନ୍ତ ପାପାତ୍ମାମାନଙ୍କର ପାପରେ ପୃଥିବୀପୂର୍ଣ୍ଣ ହୋଇଅଛି, କାଜେ ଧରଣୀର ଭାର ମୋଚନ ହେବାଲାଗି ପ୍ରଭୁ ଧରା ଧାମରେ ଅବତୀର୍ଣ୍ଣ ହୋଇଛନ୍ତି ।

ବୃହସ୍ପତି—ଦର୍ପିମାନଙ୍କ ଦର୍ପନାଶ ବ୍ୟତୀତ, ଆଉ କୌଣସି ବିଶେଷ ଉଦ୍ଦେଶ୍ୟ ସିଦ୍ଧି ନିମିତ୍ତ ଏହିଥର ଭଗବାନ୍ ମାନବ ମୂର୍ତ୍ତି ଧାରଣ କରିଛନ୍ତି । ଯେପରିକି ରୋଗୀର ଅନିଚ୍ଛାସତ୍ତ୍ୱେ ତାର ଆତ୍ମୀୟ ଜନମାନେ ବଳପୂର୍ବକ ଔଷଧସେବନ କରାନ୍ତି, ସେହିପରି ଦୁରାଶାବିକାରଗ୍ରସ୍ତ ଭ୍ରାନ୍ତ ମାନବ-ମାନଙ୍କୁ ବିମଳ ଭକ୍ତି ଶିକ୍ଷାଦେବା ଏହି କୃଷ୍ଣଲୀଳାର ପ୍ରଧାନ

ଉଦ୍ଦେଶ୍ୟ । ପ୍ରଭୁଙ୍କ ଅନୁକମ୍ପାବଳରେ ଜଗତରେ ଭକ୍ତିର ସ୍ରୋତ ପ୍ରବାହିତ ହେବ, ଶତ ଶତ ତାପିତ ଅନ୍ତର ଯେ, ସେହି ସ୍ରୋତରେ ଅବଗାହନକରି ଶୀତଳ ହେବେ ତାହା ନିଶ୍ଚିତ ।

ମାରୁଳି—ଦେବରାଜ ! ଯୋଗନିରତ ମହାତ୍ମା ନାରଦଙ୍କ ସୁମଧୁର ଗାଣାଧ୍ୱନି ଶୁଣାଯାଉଛି, ବୋଧହୁଏ ଏହିକ୍ଷଣି ସେ ଏହି ଦେବଗଣ ସ୍ଥଳରେ ଆସି ପହଞ୍ଚିବେ ।

(ଗୀତ ଗାଇ ଗାଇ ନାରଦଙ୍କର ପ୍ରବେଶ)

ରାଗିଣୀ କେଦାର-ତାଳ ଚଉତାଳ ।

(କୀର୍ତ୍ତନ)

ଜୟ ଯଶୋଦାନନ୍ଦନ, ଯଦୁପତି ଜନାର୍ଦ୍ଦନ,
ମଣ୍ଡେଶ୍ୱର ଜଗତ ଜୀବନ ।
ଜୟ ଜୟ ଜଗନ୍ନାଥ, ଶ୍ରୀପତି ଶ୍ରୀନାଥ,
ରମାକାନ୍ତ ରସିକ ରତନ ।
କାଳୀୟଦର୍ପହାରୀ କୃଷ୍ଣ କଂସାରି,
ମନମୋହନ ମୁକୁନ୍ଦ ମୁରାରି ।
ପ୍ରଭୁପଦ ମେଷ, କେଶବ ଶ୍ରୀଧର,
ଦୟାମୟ ନିତ୍ୟ ନିରଞ୍ଜନ । ୧ ।

(ଘଣ୍ଟା ବାଦନ ଅନନ୍ତର)

ଇନ୍ଦ୍ର—(ସାଦରେ) ଆସନ୍ତୁ, ଆସନ୍ତୁ ଦେବର୍ଷେ ! ଭବଦୀୟ ପାଦପଦ୍ମ ସନ୍ଦର୍ଶନ କରି ଆଜି ମୁଁ କୃତାର୍ଥ ହେଲି, ବର୍ତ୍ତମାନ ନିବେଦନ କରେଁ କି ଆପଣ କେଉଁଠାରୁ ଏଠାକୁ ଶୁଭାଗମନ କଲେ ?

ନାରଦ—(ସାନନ୍ଦେ) ଦେବରାଜ ! ମୁଁ ଗୋକୁଳରେ ବାଳକ-ବେଶଧାରୀ ଭଗବାନଙ୍କୁ ଦର୍ଶନ କରିବା ପାଇଁ ଯାଇଥିଲି । ଆହା କି ଆଶ୍ଚର୍ଯ୍ୟ, ପ୍ରଭୁଙ୍କର ଯେଉଁ ବିରାଟ ମୂର୍ତ୍ତି ସୁରାସୁରଙ୍କର ଭୀତିପ୍ରଦ, ଆଜ ସେହି ନବୀନନୀରଦନିଭ-ଶ୍ୟାମ ରୂପରେ ପରିଣତ ହୋଇଛନ୍ତି । ଭୀଷଣତା ସହିତ ସମଧୁରତାର ସମ୍ମିଶ୍ରିତ ହୋଇଅଛି । ଯଦିଚ ଭଗବାନ ବାଳକ ରୂପ ଧାରଣ କରି ଲୀଳା ଖେଳାରେ ପ୍ରବୃତ୍ତ ହୋଇ-ଛନ୍ତି, କିନ୍ତୁ ପ୍ରଭୁଙ୍କର ସେହି ଅସୀମ ସ୍ୱର୍ଗୀୟ ସୌନ୍ଦର୍ଯ୍ୟ ଭସ୍ମାଚ୍ଛାଦିତ ଅଗ୍ନି ପରି ଅନତିପ୍ରଭାରେ ପ୍ରଚ୍ଛନ୍ନ ରହିଅଛି । ଚନ୍ଦ୍ର ଚନ୍ଦ୍ର ତାରା ସୂର୍ଯ୍ୟ କିରଣରେ ପତିତ ହେଲେ ଯେପରି ସୁବର୍ଣ୍ଣରେ ସୁରଞ୍ଜିତ ହୁଏ । ସେହିପରି ପ୍ରଭୁଙ୍କର ଐଶ୍ୱରିକ ଭାବ ମନୁଷ୍ୟ ଭାବର ସହିତ ମିଶି ଯେଉଁ ଅପୂର୍ବ ଶୋଭା ବିସ୍ତାର କରିଅଛି, ତାହା ବ୍ୟକ୍ତ କରିବା ମୋ ଦୁର୍ବଳ ରସନାର ସାଧ୍ୟାତୀତ । ମୁଁ ନନ୍ଦ ଆଳୟରେ ବାଳକରୂପୀ ଭଗବାନଙ୍କର ଶ୍ରୀଚରଣ ଦର୍ଶନକରି ଆଜ କୃତାର୍ଥ ହୋଇଅଛି ।

ଇନ୍ଦ୍ର—ପ୍ରଭୋ ! ଭଗବାନ ଯେତେବେଳେ ଅବନୀ ମଣ୍ଡଳରେ ଅବତୀର୍ଣ୍ଣ ହୋଇ ଲୀଳା ଖେଳାରେ ପ୍ରବୃତ୍ତ ହୋଇଛନ୍ତି । ସେତେବେଳେ ନିଶ୍ଚୟ ହିଁ ସେ ମାନବ ସୁଲଭ ଭ୍ରମର ବଶ-ବର୍ତ୍ତୀ ହେବେ । କାରଣ ପ୍ରତ୍ୟେକ ଅବତାରରେ ସେ ଆତ୍ମ-ବିସ୍ମୃତ ହୋଇଥାନ୍ତି, ସେଥିଲାଗି ଏ ସମୟରେ ଭଗବାନଙ୍କ ସହିତ ମୁଁ ଗୋଟିଏ ରହସ୍ୟ କରିବାକୁ ଇଚ୍ଛା କରେ ।

ନାରଦ—ଦେବରାଜ ! ଅସୀମ ଭୂଗର୍ଭ, ଅତଳ ପାତାଳ, ତଳ, ଓ କୁଳଟି ମାନଙ୍କର ହୃଦୟାଭ୍ୟନ୍ତର ଯାହାଙ୍କ ଜ୍ଞାନ ଦୃଷ୍ଟିର ଅଧୀନ, ତାଙ୍କର ସଙ୍ଗରେ କି ରହସ୍ୟ

କରିବେ ? ବଂଶଧର ସମ୍ମୁଖରେ କର ସଞ୍ଚାଳନ କରିବା କଅଣ ବାତୁଳ ଜନକ ନୁହେଁ ? କେଶରୀର କେଶର ଆକର୍ଷଣ କଅଣ ସୁବୋଧର କାର୍ଯ୍ୟ ।

ଇନ୍ଦ୍ର—ଦେବର୍ଷି ! ପ୍ରଭୁଙ୍କ ଅସୀମ ଐଶ୍ୱରିକ ଶକ୍ତି ମୋର ଅପରିଜ୍ଞାତ ନୁହେ, କିନ୍ତୁ ଶର୍କରର ମିଷ୍ଟତା ପରୀକ୍ଷା ପ୍ରାୟ ମୁଁ ଥରେ ମାତ୍ର ସେହି ପରାତ୍ପର ପରମପୁରୁଷଙ୍କ କ୍ଷମତାର ପରିଚୟ ଗ୍ରହଣ କରିବ ।

ମାତୁଳ—କି ଉପାୟରେ ଆପଣ ଏହିକାର୍ଯ୍ୟ ସମ୍ପାଦନ କରିବେ ?

ଇନ୍ଦ୍ର—ଅତି ସହଜରେ ମୋର ମନୋରଥ ପୂର୍ଣ୍ଣ ହେବ । ମୁଁ ଜାଣେ ବୃନ୍ଦାବନ ଆଜକାଲି ପ୍ରଭୁଙ୍କର ଅତ୍ୟନ୍ତ ପ୍ରିୟ ସ୍ଥାନ ହୋଇଅଛି ଓ ଗୋପ ଗୋପିମାନଙ୍କର ମାୟା ଜାଲରେ ପ୍ରଭୁ ନିତାନ୍ତ ଆବଦ୍ଧ ହୋଇଛନ୍ତି । ମୁଁ ଅଧିବାସୀ ସହ ସେହି ବୃନ୍ଦାବନକୁ ଧ୍ୱଂସକରିବା ପାଇଁ ଅନବରତ ଜଳବର୍ଷଣ କରିବ ଓ ପ୍ରବଳ ଝଟିକା ଉତ୍ଥିତ କରିବା ପାଇଁ ପବନଦେବଙ୍କୁ ଆଜ୍ଞା ଦେବ । ଯାହେ ଯାହେ ଝଡ଼ତୋଫାନରେ ଓ ଅନବରତ ଜଳବର୍ଷଣରେ ବୃନ୍ଦାବନ ଧ୍ୱଂସଦଶାରେ ପତିତ ହେବ, ଦେଖି ସେ କି ଉପାୟରେ ତାହାଙ୍କ ମନମତ ବାସସ୍ଥାନ ରକ୍ଷା କରନ୍ତି ?

ବୃହସ୍ପତି—ଏ ଉପାୟଟି ମନ୍ଦନୁହେ, ଏଥିରେ ବଡ଼ ଆନନ୍ଦଅଛି ।

ନାରଦ—ଦେବରାଜ ! ତୁମ୍ଭର ଏ ମନର ଭ୍ରମ ନିଶ୍ଚୟ ନିରାକୃତ ହେବ । ତୁମ୍ଭେ ବାଳକବେଶୀ ଶ୍ରୀ ଭଗବାନଙ୍କର ଅସୀମ ଐଶ୍ୱରିକ ଶକ୍ତି ସନ୍ଦର୍ଶନରେ ଚମତ୍କୃତ ହେବ ଓ ବିମଳ ଭକ୍ତି ରସରେ ତୁମ୍ଭର ଚିତ୍ତପ୍ଲାବିତ ହୋଇଯିବ, ଅଗ୍ନି ଯେପରି କପୂରରେ ଲୁକ୍କାୟିତ ରହିବାର ସାମଗ୍ରୀ ନୁହେ,

ସେହିପରି ପ୍ରଭୁଙ୍କର ଅସୀମ ତେଜ କଅଣ କେବେ ଲୁପ୍ତ ହୋଇ ପାରେ ? ନିଶ୍ଚୟ କରତାଳି ଶ୍ରବଣରେ ଗ୍ରାମ ଅଜଗର ଯେପରି କ୍ରୁଧ ହୋଇ ଉଠେ, ସେହିପରି ତୁମ୍ଭର ଏ କାର୍ଯ୍ୟରେ ପ୍ରଭୁଙ୍କ କ୍ରୋଧାନଳ ପ୍ରଦୀପ୍ତ ହୋଇ ଉଠିବ ଓ ଅନ୍ୟାନ୍ୟ ସାଧାରଣ ଐଶ୍ୱରିକ ତେଜ ପ୍ରଭାବରେ ସମସ୍ତ ମାୟାଜାଲ ବ୍ୟର୍ଥ ହୋଇଯିବ ।

ଇନ୍ଦ୍ର—ତା ହେଉ, ସେଥିରେ କୌଣସି କ୍ଷତି ନାହିଁ, କିନ୍ତୁ ପ୍ରଭୁଙ୍କର ଅପାର ମହିମା ଜଗତରେ ବିଘୋଷିତ ହେବ । ସମସ୍ତେ ଏହି ଅଦ୍ଭୁତ ଲୀଳାଦର୍ଶନରେ ତାଙ୍କୁ ପରମପୁରୁଷ ବୋଲି ତାଙ୍କୁ ଅବନତ ମସ୍ତକେ ସ୍ୱୀକାର କରିବେ, ତା' ହେଲେ ଯଥେଷ୍ଟ, ଆଉ ମୋର କିଛି ଅନ୍ୟ ଉଦ୍ଦେଶ୍ୟ ନାହିଁ ।

ନାରଦ—ଭଲ, ତୁମ୍ଭର ଏ ସାଧୁ ଇଚ୍ଛାଟି ଫଳରେ ପରିଣତ ହେଉ, ତହିଁରେ ମୋର କୌଣସି ଆପତ୍ତି ନାହିଁ, କିନ୍ତୁ ମନ ମଧ୍ୟରେ ଠିକ୍ ଜାଣ ଯେ ଭକ୍ତବତ୍ସଳ ଭଗବାନ୍ ଭକ୍ତଙ୍କ ରକ୍ଷା ନିମନ୍ତେ କିଛି ନା କିଛି ଉପାୟ ନିର୍ଦ୍ଧାରଣ କରିବେ, ତା ନକଲେ ଶୁଭ୍ରବସ୍ତ୍ର ଖଣ୍ଡିକରେ କଜ୍ଜଳବିନ୍ଦୁପରି ତାଙ୍କ ଦୟାମୟ ନାମରେ ଯେ କଳଙ୍କ ସ୍ପର୍ଶ କରିବ । ପ୍ରଭୁଙ୍କର ଏହି ମଧୁର କୃଷ୍ଣଲୀଳାରେ ଦେବଦ୍ୱିଜଦେଷି ଅନେକ ପାପାତ୍ମା ଜଗତରୁ ଅପସରିତ ହେବେ, ସତ୍ୟ, କିନ୍ତୁ ଏହା ବ୍ୟତୀତ ଗୋକୁଳମଣ୍ଡଳ, ଗିରିଲୀଳା ଭୂପଙ୍କ ଲୀଳାର ଉପଲକ୍ଷେ ସୁଖ ମତ୍ତମାନବମାନଙ୍କୁ ଅନେକ ନିଗୂଢ଼ ଯୋଗତତ୍ତ୍ୱ ଶିକ୍ଷା ଦେବେ ଓ ଆପଣା ଅସୀମ ଶକ୍ତିର ପରିଚୟ ପ୍ରଦାନ କରିବେ । ଏମନ୍ତ କି ବିଶ୍ୱବିଜୟୀ ମଦନ-ଗର୍ବ୍ଯ୍ୟନ୍ତ ପ୍ରଭୁଙ୍କ ନିକଟରେ ପରାଜୟ ସ୍ୱୀକାର କରିବାକୁ ବାଧ ହେବେ । ଶତ ଶତ ଋଷିଙ୍କରେତା ଜିତେନ୍ଦ୍ରିୟ

ଋଷିମାନେ ତାହାଙ୍କ ଅଗଣ୍ୟ ସାଧାରଣ କ୍ଷମତାର ପରିଚୟ ପାଇ ଚମତ୍କୃତ ହେବେ ଓ ଶତ ମୁଖେ ଭଗବାନଙ୍କର ଅଲୌକିକ ଲୀଳା ଭାଣ୍ଡର ସୁଖ୍ୟାତି କରିବାରେ ବାଧ୍ୟ ହେବେ ।

ଇନ୍ଦ୍ର—ଚାଲନ୍ତୁ, ଆପଣମାନେ ଭଗବାନଙ୍କର ଲୀଳାରଙ୍ଗ ଦେଖିବା ପାଇଁ ଗମନ କରନ୍ତୁ, ତା'ପର ସୁବିଧା ମତେ ମୋ ଇଚ୍ଛା କାର୍ଯ୍ୟରେ ପରିଣତ କରିବି ।

ମାରୁତ—ଯେ ଆଜ୍ଞା ! ଚାଲନ୍ତୁ ମୁଁ ମଧ୍ୟ ଆପଣଙ୍କ ସହିତ ଗମନ କରିବି ।

ନାରଦ—ତେବେ ଆସନ୍ତୁ ।

(ସମସ୍ତଙ୍କ ପ୍ରସ୍ଥାନ)

ପଟ ପରିବର୍ତ୍ତନ

## ଦ୍ୱିତୀୟ ଦୃଶ୍ୟ—ବୃନ୍ଦାବନ ।

(ଗୋଷ୍ଠ ବେଶରେ ଶ୍ରୀକୃଷ୍ଣ, ବଳରାମ ଓ ଅନ୍ୟାନ୍ୟ ଗୋପଶିଶୁ-ମାନେ ଗୀତ ଗାଇ ଗାଇ ପ୍ରବେଶ)

### ଗୀତ

( କାଉଁନସ୍ୱର—ତାଳ ଝେମ୍ପା )

ଚାଲ ଚାଲ ଭାଇ, ଗୀତ ଗାଇ ଗାଇ;
ନାଚ ନାଚ ଗୋଠେ ଯିବା ।
ହେଲାଣି ପ୍ରଭାତ, ମନ ସୁଖେ ମିତ;
କଦମ୍ବ ତଳେ ଖେଳିବା । ପଦ ।

ପୂର୍ବ ଦିଗ ଦେଖ ରକ୍ତିମାବରଣ,
ସୁନ୍ଦରୀ ଶିରେ କି ସିନ୍ଦୂର ଭୂଷଣ;
ବହୁଛି ମୃଦୁଳ ଶୀତଳ ସମୀରଣ,
ମୋହୁଛି ମାନସ କିବା ! ୧ ।

ପୁଚ୍ଛ ଟେକି ଧାଇଁ ଛନ୍ତି ଧେନୁମାଳ,
ହମ୍ବା ହମ୍ବା ରବ କରୁଣ ସକଳ
ଏ ମଧୁରମୟ ବୃନ୍ଦାବନ ସ୍ଥଳ,
ଆହା ଦିଶେ କେଡ଼େ ଶୋଭା ! ୨ ।

ଶାଖେ ଶାଖେ ବସି ନାନା ପକ୍ଷିଗଣ,
ସୁଖେ କରୁଛନ୍ତି ସୁମଧୁର ସ୍ୱନ;
ନୀହାର ଶିଶିର ପତରେ ମଣ୍ଡନ,
ଆହା କି ଉପମା ଦେବା ! ୩ ।

ଫୁଟିଅଛୁ ତରୁ—ଲତିକାରେ ଫୁଲ,
ନାହିଁ ନାହିଁ କାହିଁ ଶୋଭା ସମତୁଲ;
ଝଙ୍କାର ନାଦରେ ଅତି ପ୍ରଫୁଲ୍ଲରେ,
ଅଳି ଚୁମ୍ବେ ହୋଇ ଲୋଭା । ୪ ।

( ସମସ୍ୱରେ ଗାନ ଓ ନର୍ତ୍ତନ )

ଶ୍ରୀକୃଷ୍ଣ—ଭାଇ ! ଆଜ ଆମେମାନେ ସମସ୍ତେ ଖୁବ୍ ନିବିଡ଼ ବନ ଭିତରକୁ ଯାଇ ଖେଳ ଖେଳିବା ! କାରଣ ଆଜିକାର ଖେଳଟା ଗୋଟିଏ ନୂତନ ଧରଣରେ ହେବ ।

ସୁବଳ—ହିଁ ଭାଇ ! ତୋର ଯେ କି ଇଚ୍ଛା ସେହି କଥା କରିବା !

ବଳରାମ—(ସ୍ୱଗତଃ) ଆଜ ପୁଣି କାହ୍ନୁର କି ନୂତନ ଭାବ ଉପସ୍ଥିତ ? ଯେଣୁ ନିବିଡ଼ ବନ ଭିତରକୁ ଯିବାର ଅଭିପ୍ରାୟ ହେଲା, ମୁଁ ଏଥିରୁ ଜାଣି ପାରୁଛି ଅବଶ୍ୟ କିଛି ଗୂଢ଼ ଉଦ୍ଦେଶ୍ୟ ଅଛି. ଯେପରି ଅଳ୍ପଅଳ୍ପ ପବନ ନହେଲେ ସରୋବର ଜଳ ଲହସ୍ତ

ଉଠେନାହିଁ, ସେଥିପାଇଁ କିଛି ବିଶେଷ କାରଣ ଉଦ୍ଭବ ନ ଥିଲେ ନିରର୍ଥକ କିଛି କଥାବାର୍ତ୍ତା ମୁଖରୁ ନିଃସୃତ ହୋଇପାରେ ନାହିଁ । ଆଜ ବିସ୍ମୃତ କୃଷ୍ଣ କିଛି ନା କିଛି ଅଲୌକିକ ଲୀଳା ପ୍ରକାଶ କରିବ,(ପ୍ରକାଶେ୍ୟ) ଭାଇ କାହ୍ନୁ ! ଆଜ ନିବିଡ଼ ବନ ମଧ୍ୟକୁ ଯିବାପାଇଁ କାହିଁକି ମନ ବଳାଇଲୁ ? କହ ଭାଇ ଆଜ କି ଖେଳ ଖେଳିବୁ ?

ଶ୍ରୀକୃଷ୍ଣ—ଭାଇ ! ତେମେତ ଜାଣ, ପ୍ରତିଦିନ ନୂଆ ନୂଆ ଖେଳ ଖେଳିବାକୁ ଏଠାକୁ ଆସୁଥାଉଁ, ଯେତେଶୀଘ୍ର ପାରିବା ସବୁ ଖେଳ ତାଙ୍କ ଶେଷକରି ନେବାକୁ ହେବ, ତେବେ ଆଜର ଯେଉଁ ନୂଆ ଖେଳଟି ହେବ, ତାହା ପରେ ଜାଣି ପାରିବ ।

ସୁଦାମ—ଭାଇ ! ଆମମାନଙ୍କ ଗାଈ ସବୁ କ୍ରମେ କ୍ରମେ ଦୂରକୁ ଚାଲି ଗଲେଣି, ଚାଲ ଆମେମାନେ ଯିବା ।

ଶ୍ରୀକୃଷ୍ଣ—ଚାଲଭାଇ ଚାଲ, କିନ୍ତୁ ଭାଇ ! ଆମେମାନେ କେତେଜଣ ଅଛେଁ ଥରେ ଗଣି ଦେଖ ତ ?

ସୁବଳ—ସଖା ! ଆମେ ବାରଜଣ ଅଛେଁ ।

ମଧୁମଙ୍ଗଳ—ନା ନା, ବାର ଊଣା ଜଣେ ଅଛେଁ ।

ଶ୍ରୀକୃଷ୍ଣ—ଆଚ୍ଛା ଚାଲ ଆମେମାନେ କ୍ରମେ ବନ ମଧ୍ୟକୁ ଯିବା ।

(ସମସ୍ତଙ୍କ ପ୍ରସ୍ଥାନ)

ଷଷ୍ଠ ପରିବର୍ତ୍ତନ ।



## ତୃତୀୟ ଦୃଶ୍ୟ—ବ୍ରଜପଥ ।

(ଗୀତ ଗାଇ ଗାଇ ନାରଦଙ୍କ ପ୍ରବେଶ)

### ଭଜନ

ଖମ୍ବାଜ ସ୍ୱର—ତାଳ ଏକତାଲୀ ।

ଭଜରେ ମନ ଶ୍ରୀନନ୍ଦନନ୍ଦନ ମୋହନ ମୁରଲୀଧାରୀ,
ଭକତରଞ୍ଜନ ଗରବଗଞ୍ଜନ ଶ୍ୟାମବନ୍ଧୁ କଇତ ଧାରୀ ।।
(ଘୋଷା)

ଶରଣ ରକ୍ଷଣ ଦେବ ଜନାର୍ଦ୍ଦନ,
ପତିତ- ପାବନ କମଳ ନୟନ;
ଅଗତିର ଗତି ଶ୍ରୀଧର ଶ୍ରୀପତି,
ଶ୍ରୀ ବୃନ୍ଦାବନ ବିହାରୀ । ୧ ।

ଭବଭୟହାରୀ ବିପଦ ଭଞ୍ଜନ,
ସତ୍ୟ ସନାତନ ନିତ୍ୟ ନିରଞ୍ଜନ,
ବଂଶୀବଦନ ନିକୁଞ୍ଜ ଚାରୀ,
ଦେବଦ୍ୱିଜ ହିତକାରୀ । ୨ ।

ନାରଦ—(ସ୍ୱଗତଃ) ହରିବୋଲ ! ହରିବୋଲ ! ହରିବୋଲ ! ହରିହେ ! ସବୁ ତୁମ୍ଭର ଖେଳ, ତୁମ୍ଭଖେଳ ତୁମ୍ଭେ ଏକା ବୁଝିପାର, ଅନ୍ୟ ଜଣେକଏ ତୁମ୍ଭ ଖେଳର ମହିମା ବୁଝି-ପାରବ ? ଗୋବିନ୍ଦହେ, ତୁମ୍ଭ କଟାକ୍ଷରେ ବ୍ରହ୍ମାଣ୍ଡ କୋଟି କୋଟି ବାର ସୃଷ୍ଟି ହୁଏ, ପୁଣି କୋଟି କୋଟିବାର ଲୟ ହୁଏ, ଏବେ ତୁମ୍ଭେ ସ୍ୱୟଂ ଗୋଲକ ପରିତ୍ୟାଗକରି ଭୂମଣ୍ଡଳ ଲୀଳାଖେଳା କରୁଛ, ଧନ୍ୟ ତୁମ୍ଭର ଲୀଳା, ଧନ୍ୟ ତୁମ୍ଭର ଖେଳ ଧନ୍ୟ ତୁମ୍ଭର ମହିମା । (ମନପ୍ରତି) ମନରେ ! ଅବୋଧ ହୁଅନା, ହେହ ଦୟାମୟ କରୁଣା ସାଗର ଦୁଃଖ ନାଶନଙ୍କ

ନାମାମୃତ ପାନରୁ ବଞ୍ଚିତ ନହୋଇ ସେହି ଶ୍ରୀହରିଙ୍କ ଐଶ୍ୱରିକ ଲୀଳା ଦର୍ଶନ କରିବାକୁ ଚାଲ, ଆହା ! ଏ ବ୍ରଜ-ମଣ୍ଡଳର ତପସ୍ୟା ଧନ୍ୟ ଯେଣୁ ଗୋଲକପତି ଭଗବାନ ବ୍ରଜବାଳକ ରୂପରେ ନାନାବିଧ ଲୀଳା ପ୍ରକାଶ କରୁଅଛନ୍ତି । ଯାଏଁ, ହରିବୋଲ ! ହରିବୋଲ ! ହରିବୋଲ !

(ପ୍ରସ୍ଥାନ)

ପଞ୍ଚ ପରିବର୍ତ୍ତନ



## ଚତୁର୍ଥ ଦୃଶ୍ୟ ।

ଗୋବର୍ଦ୍ଧନ ଗିରିର ପ୍ରାନ୍ତଭାଗ ।

(ଦେବରାଜ ଇନ୍ଦ୍ରଙ୍କର ପ୍ରବେଶ)

ଇନ୍ଦ୍ର—ଚିରଦିନ ଏହି ଗୋକୁଳରେ ଗୋପ, ଗୋପିନୀମାନେ ବର୍ଷ ଶେଷରେ ମୋର ପୂଜାକରି ଆସୁଥିଲେ କିନ୍ତୁ ସମ୍ପ୍ରତି ଶ୍ରୀକୃଷ୍ଣ କଥାରେ ପଡ଼ି ମୋର ସେହି ବାର୍ଷିକ ପୂଜାଟି ଲୋପ କରି ଅଛନ୍ତି, ଏହି ବ୍ୟାପାର ଏକପ୍ରକାର ମୋ ପକ୍ଷେ ଉତ୍ତମ ହୋଇଅଛି । ମୋର ମନୋବାଞ୍ଛା ପୂର୍ଣ୍ଣ କରିବାପାଇଁ ଉପଯୁକ୍ତ ଅବସର ଉପସ୍ଥିତ ହେଲା । ସମସ୍ତଙ୍କୁ ବୁଝାଯିବ ଯେ, ଶ୍ରୀକୃଷ୍ଣ ଗୋକୁଳରୁ ମୋର ପୂଜା ଲୋପ କରାଇଲେ, ମୋ ପ୍ରଭାବ ଦେଖାଇବାର ଅଭିପ୍ରାୟରେ ଏହି କାର୍ଯ୍ୟେ ପ୍ରବୃତ୍ତ ହୋଇଅଛି । ଶ୍ରୀହରି ହେଲେ କେଶରୀ ଯେପରି କ୍ରୋଧ ହୋଇ ଉଠେ, ସେହିପରି ମୋର ଏହି କାର୍ଯ୍ୟରେ ପ୍ରଭୁଶ୍ରେଷ୍ଠ ହୋଇ ନିଶ୍ଚୟ କିଛି ଅଲୌକିକ କାର୍ଯ୍ୟଦ୍ୱାରା ଜଗତକୁ ବିସ୍ମିତ କରିବେ । କାରଣ, ତାହାଙ୍କ ଲୀଳା ସ୍ଥାନ ଗୋକୁଳ ଓ ଭକ୍ତ ଗୋପ

ଗୋପିନୀମାନଙ୍କୁ ରକ୍ଷା କରିବାର ଉପାୟ ରଚନାକରିବେ । ଏହିସଂସାରରେ ଯେଉଁମାନେ ଅଶାନ୍ତ ଇନ୍ଦ୍ରିୟ ଗ୍ରାମକୁ ଶାସନକରି ମାୟାବନ୍ଧନ ବିଚ୍ଛିନ୍ନ ପୂର୍ବକ ଶ୍ରୀହରିଙ୍କ ପାଦପଦ୍ମକୁ ସାର କରିଛନ୍ତି; କେବଳ ସେହି ଭକ୍ତମାନଙ୍କ ଉପରେ ସର୍ବ ସଂହାରକ କାଳର କିଛି ଅଧିକାର ନାହିଁ । ଏହିସବୁ ସରଳମତି ଗୋପଗୋପୀନଗଣ ଯଦିଚ ନିଜର ଅକପଟ—ବିଶ୍ୱାସଗୁଣରେ ଓ ଦୟାସାଗର ପ୍ରଭୁଙ୍କ କୃପାରେ, କାଳର କବଳକବଳରୁ ରକ୍ଷାହୋଇଛନ୍ତି; କିନ୍ତୁ ତଥାପି ମୋର ଦୁର୍ଭେଦ୍ୟ ମାୟାଜାଲ ଛିନ୍ନକରିବା, ଏମାନଙ୍କର ସାଧ୍ୟାୟତ ନୁହେ । ସେମାନେ କଷ୍ଟସ୍ଥ ସ୍ଥିତ ହୋଇ ପ୍ରଭୁଙ୍କ ଶରଣାପନ୍ନ ହେବେ । ଦେଖି ସେମାନଙ୍କର ଜନପଦ ନିମିତ୍ତ ସେ କି, ଉପାୟ ଅବଲମ୍ବନ କରନ୍ତି, ତା ହେଲେ ଏହିକ୍ଷଣି ମୁଁ ମେଘମାନଙ୍କୁ ପ୍ରବଳ ରୂପରେ ବାରି ବର୍ଷଣ ନିମିତ୍ତ ଅନୁମତି ଦେବି । ସେହି ସଙ୍ଗେ ସଙ୍ଗେ ପବନ ଦେବ ମଧ୍ୟ ପ୍ରଚୁର ଟହ୍ମଣରେ ସହାୟତା କରିବେ । ଦେଖ, ଯାଉ ଗୋକୁଳ ରକ୍ଷା ନିମନ୍ତେ ସେ କି କାର୍ଯ୍ୟରେ ଅନୁଷ୍ଠାନ, କରନ୍ତି । (ମେଘମାନଙ୍କ ପ୍ରତି) ହେ ମେଘମାନେ ! ମୋ ଆଜ୍ଞା ପ୍ରମାଣେ ବୃଷ୍ଟିକର । ଯେପରି କି ବ୍ରଜପୁରୀ ବିନାଶ ପ୍ରାପ୍ତ ହୁଏ ।

## ଗୀତ ।

ରାଗିଣୀ ହିନ୍ଦୁସ୍ତା—ଝମ୍ପା ତାଳ ।

ପ୍ରବଳ ବରଷାକର ବିନାଶନେ ବ୍ରଜପୁରୀ,
କା'ର ସାଧ୍ୟ ରକ୍ଷାକରିବ କ୍ରୋଧ ହୋଇଲେ ମୋହରି ।
ଆବର୍ତ୍ତ ସମ୍ବର୍ତ୍ତ ଘନ, ଆହେ ପୁଷ୍କର ହେ ଦ୍ରୋଣ,
ଯାଅ ହେ ଅଠରଖଣ୍ଡ ମେଘ ମାଳ ଘେରି ॥

ବରଷ ପ୍ରଳୟ ଜଳ, ବଳୟ ନଜର ତଳ,
ଅଣଗୃଣ ପବନକୁ ସଙ୍ଗରେ ଧର ।
ହେ ପବନ ଅଣଗ୍ଣ, ବହ ପ୍ରଚଣ୍ଡ ବତାଶ୍,
ଉଡ଼ାଅ ଗୋପନଗର ଯାଅ ଶୀଘ୍ର କର ।

(ସ୍ୱଗତଃ) ମୋର ଯେତେବେଳେ ଉପଯୁକ୍ତ ଅବସର ଉପ-ସ୍ଥିତ ହୋଇଅଛି, ତେବେ ଆଉ ବୃଥା କାଳ ହରଣ କରିବା କର୍ତ୍ତବ୍ୟ ନୁହେ । ଏହିକ୍ଷଣି ଯହିଁରେ ମୋ ମନୋବାଞ୍ଛା ପୂର୍ଣ୍ଣ ହୁଏ, ତାହାର ଉଦ୍‌ଯୋଗ କରିବ । ଏବେଯାଏଁ ।

( ପ୍ରସ୍ଥାନ ).

ଇନ୍ଦ୍ର ପରିବର୍ତ୍ତନ ।



## ପଞ୍ଚମ ଦୃଶ୍ୟ ।

### ସୂର୍ଯ୍ୟ ପୂଜା ବେଦୀ ।

( ଶ୍ରୀରାଧା, ଲଳିତା, ବିଶାଖା ପ୍ରଭୃତି ସଖିମାନଙ୍କ ପ୍ରବେଶ )

ଶ୍ରୀରାଧା—ସଖି ! ଏତେବେଳଯାଏଁ ମୋ ହୃଦୟନାଥ ଦର୍ଶନ ଦେଲେ ନାହିଁ କାହିଁକି ? ସବୁଦିନେ ଏଠି ସୂର୍ଯ୍ୟକୁଣ୍ଡ ନିକଟ କଦମ୍ବ ମୂଳରେ ସେହି ବଂଶୀ ବଜାଉ ଥାଆନ୍ତି, ବୃନ୍ଦାବନଚନ୍ଦ୍ରଙ୍କର ଆଜି ତାହା ଅଭାବର କାହିଁକି ସଖି ?

ଲଳିତା - ବିନୋଦିନି ! ତୁମ୍ଭେ ନିତ ନିତ ତାଙ୍କୁ ଦେଖିବା ପାଇଁ ପାଗଳିଣୀ ପରି ଉତ୍କଣ୍ଠିତା ହେଉ ଥାଅ ନା, ଆଜି ବିନୋଦ ନାଗର ହଠ କରି ତୁମ୍ଭର ମନ ପରୀକ୍ଷା କରିବା କାରଣ କେଉଁଠାରେ ଲୁଚି ରହିଥିବେ ।

ବି.ଶା.ଖା – ଆଗୋ ! ହଟିଆ ନାଗରଙ୍କର ହାଟଲଗା, ଠାରୁ ନଟ ଲଗା ପର୍ଯ୍ୟନ୍ତ ଆଚରଣ୍ଡ଼ିତ ଅଛୁ, କେ ଜାଣେ ଆଜ କେଉ ଭଗ୍ନର କଟନ୍ତି ।

ବୃନ୍ଦା—ବିଶାଖେ ! ଏହା କହିବା ତୁମ୍ଭର ବଡ଼ ଅନ୍ୟାୟ, ରସିକ-ନାଗର ରାଧା ପ୍ରେମ ସାଗରଙ୍କ ମନରେ ଏ ଭାବ କେବେହେଁ ଉଦୟ ହେବନାହିଁ, ଜାଣିଛତ ସମୟେ ସମୟେ ଗୋଷ୍ଠରୁ ସଖାମାନଙ୍କ ସଙ୍ଗ ଛାଡ଼ି ଏକାକୀ ବୃନ୍ଦାବନଯାକ ଜୟରାଧେ ଜୟରାଧେ ବୋଲି ବଂଶୀ ବଜାଇ ପାଗଳପରି ବୁଲୁଥାଆନ୍ତି, ଯେଣୁ ଶ୍ରୀ ରାଧାଙ୍କ ସୂର୍ଯ୍ୟ ପୂଜା ସମୟରେ ନେତ୍ରମିଳନ ଓ ମଧୁର ମିଳନ ଯୋଗ ଘଟିବ, ଏଥି ଯୋଗୁ ଏହି ସୂର୍ଯ୍ୟକୁଣ୍ଡ ତାରଟି ତାଙ୍କର ଅତି ପ୍ରିୟକର ସ୍ଥାନ ହୋଇଅଛି, ଯେଉଁ ଠାରେ ଥିଲେ ମଧ୍ୟ ସୂର୍ଯ୍ୟପୂଜା ସମୟକୁ ନିଶ୍ଚୟ ଆସି ପହୁଞ୍ଚି ଯାଆନ୍ତି ; ଏହା କଣ ତୁମ୍ଭେ-ମାନେ ଅନୁଭବ କରନାହିଁ ? ମୋତେ ବୋଧ ହେଉଛି ଅଜ ଶ୍ୟାମସୁନ୍ଦରଙ୍କର ଖେଳାଲୀଳାରେ ସଖ୍ୟ ଭାବ ବୃଦ୍ଧି ହୋଇଅଛି, ତେଣୁ ଏତେ ବିଳମ୍ବ ।

ଶ୍ରୀରାଧା—ବୃନ୍ଦେ ! ତୁମ୍ଭେ ଯାହାକହୁଚ ମିଛ ନୁହେ, କିନ୍ତୁ ଜୀବନ ସଙ୍ଗୀନି ମୋର ମୋତେ ଆଜ ଦର୍ଶନ ଦେଲେ ପରି ଲାଗୁନାହିଁ । ସେ କାଲି କେଶରକୁଞ୍ଜ ଶଯ୍ୟାରେ ମୋ ଆଗେ କହିଥିଲେ, ପ୍ରାଣାଧିକେ ! ଏଥି ମଧ୍ୟରେ ମୁଁ ଗୋଟିଏ ଐଶ୍ୱର୍ଯ୍ୟଲୀଳା ଦେଖାଇବି, ତହୁଁ ମୁଁ କହିଲି, ପ୍ରାଣନାଥ ! କେଉଁ ଐଶ୍ୱର୍ଯ୍ୟଲୀଳା ଦେଖାଇବାକୁ ଇଚ୍ଛାରଚ ? ସେ କହିଲେ ଲୋକମାନେ ଯାହା ଦେଖିଲେ ଅତି ଆଶ୍ଚର୍ଯ୍ୟ ହେବେ ସେହି ଲୀଳାଟି ପ୍ରକାଶ କରିବି, ମୁଁ କରୁଣ କଣ୍ଠରେ ପଚାରିଲି, ଜୀବନବଲ୍ଲଭ ! ଦୁଷ୍ଟ କାଳି ନାଗକୁ ଦଳିଲା ପରି ତ ନୁହେ ? ତହୁଁ କଳାକାହ୍ନୁ କହିଲେ ତାହାଅପେକ୍ଷା

ଗୁରୁତର କାର୍ଯ୍ୟ, ସଖି ! ତାଙ୍କ ଶ୍ରୀମୁଖରୁ ଏ କଥାଶୁଣି ମୁଁ ବାରଂବାର ବିଷନ୍ନ କରି କହିଲି, ପ୍ରାଣପ୍ରଭୁ ! ତୁମ୍ଭକଥା ଶୁଣି ମୋ ମନରେ ବଡ଼ ସନ୍ଦେହ ଜାତ ହେଉଚି, ମୋତେ ସବସ୍ତୁ ଫିଟେଇ ତାହା ପ୍ରକାଶ କର । ବଂଶୀଧାରି ମୋର କାତର ଭାବ ଦେଖି ମୋତେ ଦମ୍ଭ ଦେଇ କହିଲେ ପ୍ରିୟେ କିଛି ଚିନ୍ତା କରନା, କାଲି ଦେବରାଜ ଇନ୍ଦ୍ର ମୋଠୁଲେ ବିବାଧ ହୋଇ ଘୋର ଝଡ଼ ତୋଫାନ ସହିତ ପ୍ରଳୟ ବରଷା କରିବ, ଯହିଁରେକ ଗୋକୁଳପୁରୀ ଧ୍ୱଂସ ପ୍ରାପ୍ତହୋଇ ପାରେ, ସେଥି ନିମନ୍ତେ ଗୋବର୍ଦ୍ଧନ ଗିରିକି ବାମକର କନିଷ୍ଠ ଅଙ୍ଗୁଳିରେ ଧାରଣ କରିବି । ବୃନ୍ଦେ଼ଗୋ ! ସତେ ପ୍ରାଣନାଥ ମୋର ଏପରି ଅଲୌକିକ ଘଟନା ଦେଖାଇବେ, ସଖି, ଯେଉଁ ମୃଦୁମନ୍ଦ କରପଦ୍ମ ଲବଣୀଠାରୁ କୋମଳ-ତର, ଗୋପ ସଖାଙ୍କ ସେହି ଶ୍ରୀହସ୍ତରେ ଏତେବଡ଼ ଗୋବର୍ଦ୍ଧନ ପର୍ବତକୁ କିପରି ଧରିପାରିବେ ? ଆହା ! ଶ୍ୟାମଚନ୍ଦ୍ରଙ୍କ ସୁକୋମଳ କରପଦ୍ମକୁ କି ବ୍ୟଥା ନ ହେବ ? ସଖିଗଣ ! ଆଜ ରଙ୍କନିଧି ମୋର ଏଠାକୁ ଅସିବାମାତ୍ରେ ତୁମ୍ଭେ ସମସ୍ତେ ମୋଲାଗି ତାଙ୍କୁ ହାତଧରି ଜଣାଇବ । ସେପରିକି ଗୋବର୍ଦ୍ଧନ ଗିରିକି ଧାରଣ କରିବାକୁ ସାହାସ ନ କରିବେ । ମୁଁ ତୁମ୍ଭମାନଙ୍କୁ ମୋରାଣ ଦେଇ କହୁଚି, ସଖି ଏ ଅଭଗିନୀ କଥା ଭୁଲିବ ନାହିଁଟି ?।

ବୃନ୍ଦା—କିଶୋରମଣି ! ତୁମ୍ଭେ କଅଣ ପାଗଳିଣୀ ହେଲ ? ଶ୍ରୀକୃଷ୍ଣ ଚନ୍ଦ୍ରଙ୍କୁ ତୁମ୍ଭେ କଅଣ ବୋଲି ମନେ କରିଚ କିଗୋ ! ସେ ପରା ତ୍ରିଭୁବନ ମୋହନ, କୋଟି କୋଟି ବ୍ରହ୍ମାଣ୍ଡ ଯାହାଙ୍କ ଲୋମକୂପମାନଙ୍କରେ ଗୁନ୍ଥା ହୋଇଅଛି ତାଙ୍କ ପକ୍ଷେ ଗୋବର୍ଦ୍ଧନଗିରି ଧାରଣ କରିବା କି ଆଶ୍ଚର୍ଯ୍ୟ କହିଲଭଲ ? ସବୁଧ ! କିଛି ଅନ୍ୟମନେ କରନା, କୁଞ୍ଜ-

ବିନ୍ଧ୍ୟାବଳଙ୍କର କ୍ଷମତାଅଛି, ସେ ଏକନିମିଷକେ ଦଣ୍ଡଟା ଗୋବର୍ଦ୍ଧନ ପର୍ବତ ଉଠାଇ ପାରନ୍ତି, ତୁମ୍ଭେ ଏଥିପାଇଁ କାତରତା ଅନୁଭବ କରୁଛ କାହିଁକି ସଖି, ଧୈର୍ଯ୍ୟଧର, ନୀଳମଣି ଏ ବ୍ରଜମଣ୍ଡଳରେ ଯେତେ ଯେତେ କାର୍ଯ୍ୟ ସାଧନ କରୁଛନ୍ତି ସବୁ ମଙ୍ଗଳ ନିମନ୍ତେ, ମଙ୍ଗଳମୟ ଶ୍ରୀକୃଷ୍ଣ କେବେହେଁ ଅମଙ୍ଗଳକାର୍ଯ୍ୟ କରିବେନାହିଁ, ବୋଧହୁଏ ବ୍ରଜ ପୁରୀର ମଙ୍ଗଳ କାମନାରେ ଏ ଦୁଃସାଧ୍ୟ କାର୍ଯ୍ୟଟି କରିବେ ବୋଲି ଇଚ୍ଛା କରିଅଛନ୍ତି, ଏଥିଲାଗି ତୁମ୍ଭେ ଶୋକାତୁର ଓ ଚିନ୍ତାନ୍ୱିତା ହେବା ଉଚିତନୁହେ, ଦମ୍ଭଧର । ଏବେ ତାଙ୍କ ନାମରେ ସମସ୍ତେ ଗୋଟିଏ ଜୟ ଗୀତିକା ଗାନ କର ।

## ଗୀତ ।

(ଗୋଷ୍ଠ ହତେ ଆଇଲ ନନ୍ଦଦୁଲାଲ ବୃତେଓ)

ଭଜଗୋ ! ବରଜରଜ କୁଞ୍ଜବିହାରୀ ।
ବ୍ରଜକିଶୋର ମୁରଲୀଧର, କିଶୋରୀମନୋହାରୀ । ଘୋଷା ।

ନାଚୁଥା ନଟନଗର, ପ୍ରୀତି ମୂରତି ଯଶୋଦା ନେତ୍ର ସମ୍ପତ୍ତି, ପରମାନନ୍ଦେ ଆଜ୍ଞ ଗାଇ ତାଙ୍କ ଯଶ ଗୀତ ଲଭିବା ଭକତ ମୁକତି । ଜୟ ମଧୁସୂଦନ ଗୋପୀନୀ ମୋହନ କୃଷ୍ଣଜୀବନଜୀବର ପରମାନନ୍ଦ ମନ୍ଦହେ ମାଧବ ଗିରିଧାରି ମୁକୁନ୍ଦ ମୁରାରି । ଗାଅ ଗାଅ ଗୋ ଅଜ ବ୍ରଜକିଶୋରଙ୍କ ଯଶକାରତ, ପ୍ରେମେମୋଦ, ଗାଅ ଗୋ ଅଜ, ଅନୁରାଗେ ତାଙ୍କ ଗାଇବେମଙ୍କି । ସଖିଗଣ ! ଶ୍ୟାମ ନାମକୁ ଭଜ ॥ ଭଜ ଗୋ ବରଜରଜ । ଇତ୍ୟାଦି ।

(ସମସ୍ୱରେ ଗାନ ଓ ନୃତ୍ୟ)

(ଯବନିକା ପତନ)

ପ୍ରଥମ ଅଙ୍କ ସମ୍ପୂର୍ଣ୍ଣ



# ଦ୍ୱିତୀୟ ଅଙ୍କ ।

## ପ୍ରଥମ ଦୃଶ୍ୟ—ଗୋକୁଳ ପଥ ।

(ନନ୍ଦ, ଉପନନ୍ଦ ପ୍ରଭୃତି ଗୋପମାନଙ୍କ ପ୍ରବେଶ ।)

ନନ୍ଦ—ଭାଇମାନେ ! ଆଜିକି ଦୁଇଦିନ ହେଲା ବୃଷ୍ଟି କ୍ରମେ କ୍ରମେ ପ୍ରବଳ ହେଉଅଛି, ବୋଧହୁଏ ଏହାପରେ ଝଡ଼ ତୋଫାନ କିଛି ଘନ କରିବ, କହିଲ ଭାଇ କପରି ଗୋରୁମାନଙ୍କୁ ବନମଧ୍ୟରେ ରଖିବା ? ଏତବଡ଼ ବିଷମଝଡ଼ ହେଲା ।

ଉପ—ଭାଇ ! ମୋତେ ଅସି ଏତେ ବୟସ ହେଲା, କିନ୍ତୁ ଏପରି ବିଚିତ୍ର ବ୍ୟାପାର କେବେ ଦେଖି ନାହିଁ । ଯେପରି ଗତି ଦେଖା ଯାଉଛି, ବୋଧହୁଏ ପୃଥିବୀ ଆଜ ରସାତଳ ହୋଇ ଯିବ ।

ସୁନନ୍ଦ—ଏଥିରେ ଆଉ ସନ୍ଦେହ କଅଣ ? ଯେ ପ୍ରକାର ଝଡ଼ ବୃଷ୍ଟି ହେଉଛି, ବୋଧହୁଏ ଅଲ୍ପକ୍ଷଣ ମଧ୍ୟରେ ଏହି ଗୋଲୋକଧାମଗୋକୁଳପୁରୀ ଧ୍ୱଂସମୁଖରେ ଉପନୀତ ହେବ । ଏଥିମଧ୍ୟରେ ଗୃହଦ୍ୱାରକୁ ଘରଦ୍ୱାର ଭାଙ୍ଗିପଡ଼ିବାକୁ ଆରମ୍ଭ ହେଲାଣି, କେତେକ ଘର ମଧ୍ୟ ଭାଙ୍ଗିଗଲାଣି, ଆମ୍ଭମାନଙ୍କ ଲୋକଙ୍କ ଆର୍ତ୍ତନାଦରେ ଚତୁର୍ଦ୍ଦିଗ ପ୍ରତିଧ୍ୱନିତ ହେଉଅଛି, ମୁଁ ଜାଣିପାରୁଛି ଆଜ ଆମ୍ଭେ ସମସ୍ତେ ଅକାଳେ କାଳକବଳରେ ପତିତ ହେବାକୁ ହେବ ।

ନନ୍ଦ—ବିଧାତା ଯେ ଅକାଳରେ ଅଦିନରେ ଏପରି ପ୍ରଳୟ କରିବ, ତାହା କିଛି ମାତ୍ର ଜଣାଯାଉନାହିଁ, ତେବେ କାହିଁକି ଆଜ ହଠାତ୍ ଏଭଳିଆ ବୃଷ୍ଟି ଝଡ଼ର ଉପକ୍ରମ ହେଲା । ଆଉ ଅଳ୍ପକ୍ଷଣ ଏହାପରେ ଦୁର୍ଯୋଗ ହେଲେ ଏ ବ୍ରଜମଣ୍ଡଳରେ ଜଣେ ହେଲେ ପ୍ରାଣଧରି ରହିପାରିବନାହିଁ,

ଏ ଘଟନା ଦେଖି ମୋତେ ବୋଧ ହେଉଛି ଯେ, ଆମ୍ଭେମାନେ କେଉଁ ଦେବତାର କୋପାନଳରେ ପଡ଼ିଅଛେଇଁ ସେଥିଲାଗି ଏ ମହା ବିପଦ ଘଟିଛି, ଏବେ ଆମ୍ଭେମାନେ ଯେ କି ଉପାୟ କରିବା, କି ପ୍ରକାରେ ସପରିବାରରେ ପ୍ରାଣଧାରଣ କରିବା ତାହା କିଛି ସ୍ଥିରକରି ପାରୁନାହିଁ । ହେ ଭଗବାନ ! ହେ ଦୟାମୟ ! ମଧୁସୂଦନ ! ଏ ବିପଦରୁ ରକ୍ଷାକର ।

ଉପନନ୍ଦ—ଗୋପରାଜ ! ଆସନ୍ତୁ ଆସନ୍ତୁ, ରାଜ ଭବନକୁ ଶୀଘ୍ର ଗମନ କରନ୍ତୁ, ଏହି ଦେଖନ୍ତୁ ଘନ ଘନ ବିଜୁଳି ମାରି କପରି ଘୋର ବୃଷ୍ଟି ମାଡ଼ି ଆସିଲାଣି ।

ନନ୍ଦ—ଚାଲ ସ୍ୱାମୀ ! ଚାଲ, ଭଗବାନଙ୍କ ନାମ ସ୍ମରଣ କର, ଉଚ୍ଚସ୍ୱରରେ ଶ୍ରୀହରିଙ୍କ ନାମ ଗାଇ ଗାଇ ଚାଲ, ଶୀଘ୍ର ଚାଲ ।

ସମସ୍ତେ—ହେ ଶ୍ରୀହରି ! ହେ ଶ୍ରୀହରି ! ଏ ମହା ବିପଦରୁ ରକ୍ଷା କର ।

## ଗୀତ ।

କୀର୍ତ୍ତନସ୍ୱର ।

ହେ ଶ୍ରୀହରି ଦୟାମୟ କରୁଣା ନିଧାନ,
ଭକତବତ୍ସଳ ପ୍ରଭୁ ପତିତ ପାବନ,
ରକ୍ଷାକର ଦୀନବନ୍ଧୁ ଗୋଲୋକ ବିହାରୀ,
ଅନାଥ ଗୋପାଳ କୁଳ ଯାଉଅଛୁଁ ସରି ।
ତୁମ୍ଭେ ନ ରଖିଲେ ପ୍ରଭୁ ଆଉ ନାହିଁ ଗତି,
ଜଗତ ଜୀବନ ହେ ଜଗତ ଜନ ପତି

( ବାରେ ରକ୍ଷା କର ହେ )
( ଅନାଥର ନାଥ ବାରେ ରକ୍ଷା କର ହେ )

ଅଧମ ଚାରଣ ମାନ ଉଚ୍ଚାରଣ;—
( ରକ୍ଷା କର ହେ ) ।

[ଗାଇ ଗାଇ ସମସ୍ତଙ୍କର ପ୍ରସ୍ଥାନ]

ଷଷ୍ଠ ପରିବର୍ତ୍ତନ



## ଦ୍ୱିତୀୟ ଦୃଶ୍ୟ—ଗୋକୁଳପୁରୀ ।

( ଅନ୍ତଃପୁରରେ ଯଶୋଦାରାଣୀ ଓ ଅନ୍ୟାନ୍ୟ ଗୋପୀମାନେ )

କମଳା—ଆଗୋ ନନ୍ଦରାଣି ! ଏ ବରଷାତ କେବେ ଦେଖା ନ ଥିଲା ? ଦେଖୁଚ, ବେଳକୁବେଳ ଅତିଶୟ ପ୍ରବଳ ହୋଇ ଝଡ଼ ବତାଶ, ହେଉଚି, ଆଜ କଣ ଏ ଗୋପପୁରୀକି ରଖିବ ନାହିଁ କି ଗୋ ?

ଯଶୋଦା—ଆଗୋ କମଳେ ! ଏ ବୃଷ୍ଟି ଦେଖି ମୋତେ ବଡ଼ ଭୟ ହେଲାଣି, ମା ! ସର୍ବମଙ୍ଗଳେ, ଏ ମହା ଘୋର ବିପତ୍ତିରେ କାହିଁକି ପକାଇ ଦେଉଚୁ ମା ! ମାଗୋ ! ଦୁର୍ଗତି ନାଶିନି ଦୁର୍ଗେ; ମା ଜଗଦମ୍ବେ, ! ମା ଅମ୍ବିକେ ! ରକ୍ଷାକର ରକ୍ଷାକର !! ନୋହିଲେ ଆଉ ଗତି ନାହିଁ । ( ଦାସୀପ୍ରତି) କମଳା ଗୋ ! ଏବେ କି, ଉପାୟ କରିବାକି ?

କମଳା—ମହାଦେଇ ! ମୋତେ ଏଥିକି କିଛି ବୁଦ୍ଧି ବାଟ ଦିଶୁ-ନାହିଁ ତ ?

ବିମଳା—ଆଗୋ ! ବୁଦ୍ଧି ବାଟ କଅଣ ଦିଶିବ ବୋଲି କହୁଚ ? ଏ କେଉଁ ଦେବତାର କୁଟ ହୋଇଚ, ତା, ନୋହିଲେ କେବେ ଯାହା ଆଖି ଦେଖି ନ ଥିଲା, ଏପରି ବରଷା କାହିଁ ହୁଅନ୍ତା ? ,

ଯଶୋଦା—ଦାସୀଏ ଗୋ ! ଏ ବୃକ୍ଷଘର ବାଉ ଭସି ଯାଉ ହୁଛନ୍ତି, ତହିଁରେ ବଶେଷ କ୍ଷତ ନାହିଁ; କନ୍ତୁ କ ପ୍ରକାରେ ଆମେମାନେ ପ୍ରାଣରକ୍ଷା କରବା ଏହ ଚନ୍ତାହିଁ ମହାଚନ୍ତା । ପୁଣି ମୋ ନୀଳମଣିଟି ଯେ ଏ ବପଦ ସମୟରେ ମୋ କୋଳରେ ନାହିଁ, ସଖାମାନଙ୍କ ସଙ୍ଗେ ଗାଈ ଚରାଇବାକୁ ବନକୁ ଯାଇଛ, ଆହା ! ସେ ତ ମୋର ଆଦରର ଧନ, ଅନ୍ଧର ଲଉଡ଼ୀ, ଗଣ୍ଠି ସଙ୍ଗାଳ, ସେ ତ ମୋର ନୟନ ପ୍ରତମା, ଗଳା ରତ୍ନମାଳ, ଏ ବରଷାରେ କପର ବନ ମଧ୍ୟରେ ରହିଥିବଟି ? ଦାସୀଏ ଗୋ ! ମୁଁ କ ବୁଦ୍ଧି କରବ କହଦେଲ ହେଲେ ? ମୁଁ ଏଭ ଘୋର ବପଦରେ କପର ନୀଳମଣିକ ବଞ୍ଚାଇବ ? ମୋର ଏ ଶ୍ରୀର ପ୍ରାଣ ପ୍ରତ ଲେଶ ମାତ୍ର ମମତା ନାହିଁ, ମରବାକୁ ମୋର ଭୟ ନାହିଁ, କେବଳ ମୋ କଳାମାଣିକ କପର ରହବ ଏହ ଭାବନା ଭବ ଭବ ପ୍ରାଣ ବଡ଼ ଆକୁଳତ ହେଉଛ । ମା ! ଜଗତ୍ପୂଜ୍ୟ ପୂଜ୍ୟେଶ୍ୱରୀ ! ମା ! ସର୍ବମଙ୍ଗଳେ ! ମା ! ଚଣ୍ଡିକେ ! ଏ ମହା ବପଦ କାଳରେ ଦାସୀ ତୋର ପବତ୍ର ପାଦପଦ୍ମରେ ଶରଣାପନ୍ନ ହେଉଛୁ, ମାତଗୋ ! କୃପାମୟି ! କୃପାକର ଏହ ମହା ବପଦରୁ ରକ୍ଷାକର, ମୋ ନୀଳମଣିକ ଘଣ୍ଟ ଘୋଡ଼େଇ ରଖ ମା ! ତୋହନା ଏ ଦାସୀର ଆଉ କନ୍ତୁ ସହାୟ ସମ୍ପତ ନାହିଁ, ମାଗୋ ! ମୁଁ ଅନେକ ଆରାଧନା କରି ଅମୂଲ୍ୟରତ୍ନ ନୀଳମଣିକ ପାଇଛ, ଆଜ ଏହ ମହାଶଙ୍କଟରୁ ମୋ କୃଷ୍ଣଚନ୍ଦ୍ରକୁ ରକ୍ଷାକର ମା ! ତୋର ଦୟା ହେଲେ ମହାସମୁଦ୍ର ଗୋଷ୍ପଦରେ ପରଣତ ହୁଏ, ସୁତରାଂ ଆମମାନଙ୍କର ଏ ଘୋର ବପଦକୁ ବନାଶକରବା ତୋ ପକ୍ଷରେ ସାମାନ୍ୟ ମାତ୍ର । ମାଗୋ ଏ ବପଦ ସାଗରେ ପଡ଼ ତୋର ଅଭୟ ପାଦପଦ୍ମ ତଳେ ଶରଣ ନେଲ, ତୋର ଦୟାମୟୀ ନାମରେ ଯେପର କଳଙ୍କ ନ ରହେ ।

## ସ୍ତୁତି ।

(ଝିଝିଟି ବସନ୍ତ ବାହାର—ତାଳ ଠେକା)

କାତରେ ଏ କିଙ୍କରିରେ କର କରୁଣା,
ମାଗୋ ! ତ୍ରିତାପ ନାଶିନୀ ମା ! ନିରଞ୍ଜନା ॥

ଦକ୍ଷସୁତା ଦାକ୍ଷାୟଣୀ, ଦୀନଜନ ଦଳନୀ,
ଦୁର୍ଗେ ଦୁର୍ଗତି ନାଶିନୀ ଦେ ମୋ କୃପାକଣା ୧ ।

ପଡ଼ିଛି ଘୋର ସଙ୍କଟ, ଦନୁଜାଙ୍କ ବୁଦ୍ଧି ନାଠ,
ରକ୍ଷାକରିବାକୁ ଆଉ ନାହିଁ କେ ତୋ ବିନା । ୨ ।

(ସ୍ତୁତି ଗାଇ ଗାଇ ଅନ୍ତଃପୁର ଭିତରକୁ ପ୍ରସ୍ଥାନ)

ପଟପରିବର୍ତ୍ତନ ।



## ତୃତୀୟ ଦୃଶ୍ୟ—ବନପଥ ।

( କୃଷ୍ଣଜଣ ଗୋପାଳଙ୍କ ପ୍ରବେଶ )

## ଗୀତ ।

ନବ ବସନ୍ତ ସମୟ ବୃନ୍ଦେ ।

ଯାଇ ଏ କି ଅସମ୍ଭବ ।
ଆହା ଗୋପପୁର କି ଉତ୍ସବ ରେ । ପଦ ।

ଗୋଠ ବୃନ୍ଦାବନ    ସୀମା ଆସ୍ଥାନ
ଛୋଟିଛି ମେଘ ଅନ୍ଧାର ହେ ।
ବହୁଛି ପବନ    ବରଷୁଛି ଘନ
ଯେସନେ ପ୍ରଳୟ ଘୋର ହେ । ୧ ।

ଭାଠ ଝାଙ୍କ ଝାଙ୍କ,    ବଦ୍ୟ ଭାଙ୍କ ଭାଙ୍କ,
ଘଡଘଡ଼ ଚଡ଼ଚଡ଼ ହେ ।
ଅତି ଉତପାତ,    ପଡଇ ନିର୍ଘାତ,
ଘନଘନ ଘଡ଼ଘଡ଼ ହେ । ୨ ।
କରଣ ତର୍ଜନ,    ଘୋର ଗରଜନ,
ଭସ୍ମ ସଙ୍ଗେ ରକ୍ତ ବୃଷ୍ଟି ହେ ।
ଘୁମୁ ଘୁମୁ ଧ୍ୱନ,    ଦୁମ୍ ଦୁମ୍ ମେଦନୀ,
ଅନେକ ହେଲା ଅରିଷ୍ଟି ହେ । ୩ ।

ପ୍ରଥମ ଗୋପାଳ—ଭାଇ ! ପଳାଇ ଆସ, ପଳାଇ ଆସ, ଏ ଯେଉଁ ଅଗ୍ନିକଣ ବୃଷ୍ଟି ହେଉଛି ଅନାୟାସରେ ପ୍ରାଣ ବାହାରି ଯିବ, ଶୀଘ୍ର ପଳାଇ ଆସ, ଆପଣା ଆପଣା ଘରମାନଙ୍କରେ ହେଲେ ରହିଯିବା ।

ଦ୍ୱିତୀୟ ଗୋପାଳ—ଆରେ ଭାଇ ! କୁଆଡ଼େ ପଳେଇ ପଶିବା କହିଲୁ ? ଶୁଣିନୁ ନା ? ଗୋପପୁର କେତେଣେ କଅଣ ହେଲଣି ?

ପ୍ରଥମ ଗୋପାଳ—ନା, ରେ ଭାଇ ! ମୁଁ ଶୁଣି ନାହିଁ, ଘଟଣାଟା କଅଣ କହିଲୁ ଭାଇ ?

ଦ୍ୱିତୀୟ ଗୋପାଳ—ଭେଦ ଶୁଣୁ ! ସୁବୁଦ୍ଧି ଦେବଦେବ, ଅଦ୍ଭୁତ ଦେବଦେବ କଅଣ କହୁଛନ୍ତି, ଶୁଣୁ ।

( ତୃତୀୟ ଓ ଚତୁର୍ଥ ଗୋପାଳ ଦୁହିଙ୍କ ଗାନ )

## ଗୀତ ।

ବସନ୍ତ ସ୍ୱର ।

ଭାଇ ଆନନ୍ଦ କି ବଞ୍ଚିବା ।
କହ କାହିଁ ପଳାଇ ପଶିବା ରେ । ପଦ ।

ନନ୍ଦର ମହିଳା,    ଗୋବର୍ଦ୍ଧନ ମଲ୍ଲ
ମଧୁର ପଡ଼ିଲା ଟଳି ହେ ।

ଭୁଜଳ ଅକାଳ ବୃକ୍ଷମାନେ ଢ଼ଳନ୍ତ,
ପଡ଼ୁଅଛି ଡାଲଡୋଳ ହେ । ୧ ।

କର ହମ୍ବାରବ, ଶୃଙ୍ଗ ପୋତ ଗାବ,
ପଳାଇଲେ ଏଣେ ତେଣେ ହେ ।
ଉଠୁଅଛି କୋହ, ରହୁନାହିଁ ଲୁହ,
ଆମ୍ଭର ନୟନ କୋଣେ ହେ । ୨ ।

କଏ କେଉଁ ଆଡ଼େ ପଳାଇ ଗଲେଣି
ଗୋପପୁର ହତଶିରୀ ହେ ।
ଠାବେ ଠାବେ ବସି ରଡ଼ି ଛାଡ଼ୁଛନ୍ତି,
ବୁଢ଼ା ଯୁବା ଯେତେ ନାରୀ ହେ । ୩ ।

୧ମ ଗୋପାଳ—ଭାଇ ! ଯା କଅଣ ସତ ?

୨ୟ ଗୋପାଳ—ଆରେ ଭାଇ ! ଚାଲ ଗୋପ ପୁରକୁ ଗଲେ ସବୁ ଦେଖିବ ଚାଲ, ଶୀଘ୍ର ଚାଲ ।

( ସମସ୍ତଙ୍କ ପ୍ରସ୍ଥାନ )

ଦୃଶ୍ୟ ପରିବର୍ତ୍ତନ



## ଚତୁର୍ଥ ଦୃଶ୍ୟ—ବୃନ୍ଦାବନ

( ଶ୍ରୀକୃଷ୍ଣ, ବଳରାମ ଓ ସଖାଗଣ )

ବଳରାମ—କାହ୍ନୁ ! ଏ ଭଳିଆ ବୃଷ୍ଟି ତ କେବେ ଦେଖା ନ ଥିଲା, ଦେଖ ଭାଇ ! କପରି ବେଳକୁ ବେଳ ଅଗୁଣକ ବଢ଼ି ହେଉଅଛି, ଆଉ ଏ ବନ ମଧ୍ୟରେ ରହି ପାରିବା ନାହିଁ, ଚାଲ ସମସ୍ତେ ଘରମାନଙ୍କୁ ବାହାରି ଯିବା ।

ଶ୍ରୀକୃଷ୍ଣ—ଭାଇ !, ତୁମେ ଏତେ ଭୟକରୁଛ କାହିଁକି ? ଛାର ମେଘ ବରଷାଟା ଆମର କଅଣ କରି ପାରିବ, ତା' ଛାଏଁ ବନ୍ଦ ହୋଇ ! ଯିବ, କାତର ହୁଅନା ।

ସୁବଳ—ଲଟିହ୍ନାଇ ଧରି କର୍ପୂର ବେଡ଼ହେଇ କାହିଁକି କାନ୍ଦକାନ୍ଦ ଏତେଣ ଆସୁଚି ଦେଖନ୍ତ ?

(କାନ୍ଦ କାନ୍ଦ କର୍ପୂରର ପ୍ରବେଶ)

ଶ୍ରୀକୃଷ୍ଣ—କିରେ କର୍ପୂର ! କାହିଁକି ଏପରି ଅଧୈର୍ଯ୍ୟ ହୋଇ କାନ୍ଦ ଲଗେଚୁ ? କଥା କଅଣ କହ ।

କର୍ପୂର—ଉଁ, ହୁଁ, ଉଁ, କହିଲା ବେଳକୁ ମୋ ପାଟିରୁ କଥା ବାହାରୁ ନାହିଁ, ଖନଲାଗି ଯାଉଚି, ଉଁ, ଉଁ, ଉଁ ।

ଶ୍ରୀକୃଷ୍ଣ—ଆରେ ଧର୍ମ୍ମଧର, ଏପରି ହେଲେ କଅଣ ହେବ ? କଥାଟା କଅଣ, ଗୋପ ପୁରର ହାଲ କଅଣ କହ ।

କର୍ପୂର—ମୋତେ ନନ୍ଦରାଣୀ ପଠେଇଛନ୍ତି, ବେଗେ ପଳେଇଆସ, ଆଉ ଗୋପପୁର ହୋଇ ନାହିଁ, ଗୋକୁଳ ସମ୍ପତ୍ତି ସବୁ ସରିଗଲା, ଦେହ ସବୁ ସରିଗଲା, ଗଡ଼ଲ ଦେଖିବ ଚଞ୍ଚଳ ଆସ ।

ବଳରାମ—କାହ୍ନୁ ! ଚାଲ ଚାଲ, କଅଣ ହେଲା ଦେଖିବା, ଗୋପକୁ ଚାଲ ଭାଇ ।

ଶ୍ରୀକୃଷ୍ଣ—ଭାଇ ! କିଛି ଚିନ୍ତାକରନା, ଛାର ମେଘ ବରଷାଟା ହୋଇ ଗୋପପୁରର କଅଣ ଅନିଷ୍ଟ କରିପାରିବ ? ଧର୍ମ୍ମଧର, ମୁଁ ଏହାର ପ୍ରତିକାର କରିବି । (କର୍ପୂର ପ୍ରତି) ଆରେ କର୍ପୂର, ଯା ଯା, ମାଆଙ୍କୁ କହିବୁ, କିଛି ଚିନ୍ତା କରିବେ ନାହିଁ । ଅଧୀର ନ ହୋଇ ଆନନ୍ଦରେ ଥାଆନ୍ତୁ, ମୁଁ ସଖାମାନଙ୍କ ସଙ୍ଗେ ଏହି ଏକଲକ୍ଷଣ ମଧ୍ୟରେ ଯାଉଛି । ମୋ ସଙ୍ଗରେ

ବଳୀ ଭାଇ ଯେତେବେଳେ ଅଛନ୍ତି, ମୋର ଡର ଭୟ କଅଣ ? ଯା ମାଙ୍କୁ ବୁଝେଇ, ବୁଝେଇ କହିବୁ ଯା ।

କର୍ପୂର—ତେବେ ମୁଁ ଯାଉଚ ।

(ପ୍ରସ୍ଥାନ)

ଶ୍ରୀକୃଷ୍ଣ—ସଖା ଗଣ, ଆମ୍ଭେମାନେ ଆସ ଗାଈ ବାଛୁରୀମାନଙ୍କୁ ନେଇ ଗୋବର୍ଦ୍ଧନଗିରି ଆଡ଼େ ଯିବା ।

ସୁବଳ—ହିଁ, ଚାଲ ଭାଇ ଚାଲ ।

(ଗୀତ ସହ ସମସ୍ତଙ୍କ ପ୍ରସ୍ଥାନ)

ଦୃଶ୍ୟ ପରିବର୍ତ୍ତନ ।



## ପଞ୍ଚମ ଦୃଶ୍ୟ ।

(ଗୋପ ଗୃହାଭ୍ୟନ୍ତର ।)

(କାତରଭାବେ ନନ୍ଦ, ଉପନନ୍ଦ, ସୁନନ୍ଦ ପ୍ରଭୃତି ଗୋପମାନଙ୍କ ପ୍ରବେଶ)

ନନ୍ଦ—ହାୟ ! ହାୟ ! ଏବେ କଉପାୟ, ଜାଣୁଅଛୁ ଇନ୍ଦ୍ର କୋପେ ଏହି ବ୍ରଜପୁରୀ, ଧ୍ୱଂସ ହୋଇଯିବ ନିଶ୍ଚୟେ; କାହିଁ ମୋର ପ୍ରାଣାଧିକ କୃଷ୍ଣଚନ୍ଦ୍ର ମୋହର, ଏ ଘୋର ବିପଦେ ଆସି କର ପରିତ୍ରାଣ, ଭୀତ ତ୍ରସ୍ତ ହୋଇଲେଣି ଯେତେ ଗୋପଗଣ ।

ଉପନନ୍ଦ—ହେ ବ୍ରଜରାଜ ! ଦେଖି, ଶୁଣି ଆତଙ୍କରେ ଅମ୍ଭମାନଙ୍କ ହୃଦୟ ଥରହର ହେଉଅଛି, ଦେଖ ଦେଖ ଏବେ ଆକାଶ-ମଣ୍ଡଳ ପ୍ରଳୟ ଘନଘଟାରେ ଆଚ୍ଛନ୍ନ ! ସୌନ୍ଦର୍ଯ୍ୟ-ଶାଳିନୀ ଗୋକୁଳ ନଗରୀ ଘୋର ଅନ୍ଧକାରରେ ପ୍ଲାବିତ ! ବୃକ୍ଷ, ଲତା, ଏପରି କି କୌଣସି ପଦାର୍ଥର ଅସ୍ତିତ୍ୱ ଦୃଷ୍ଟି-ଗୋଚର ହେଉନାହିଁ । ଏ ଭୟାବହ ଦୁର୍ଘଟନା ଆମ୍ଭମାନଙ୍କ

ଜୀବନରେ କେବେହେଁ ଦେଖାଯାଇନଥିଲା, କଅଣ ହେଲା, ଆହା ! କଅଣ ହେଲା ? ଆଉରି କି ହେବ କେଜାଣେ ? ହେ ଆର୍ଯ୍ୟ ! ଆମ୍ଭେମାନେ ତ ଏହା ଦେଖି କିଂ କର୍ତ୍ତବ୍ୟ ବିମୂଢ଼ ହୋଇଗଲୁଣି ।

ନନ୍ଦ — ଗୋପଗଣ ! ସ୍ୱଇ ଉପବନନ୍ଦ ! ତୁମ୍ଭମାନଙ୍କ ପରି ମୁଁ ମଧ୍ୟ ଅଜ୍ଞାନ୍ ନଷ୍ଟଜ୍ଞ ହୋଇଯାଉଲିଣି, ଯଦି ଦୟାମୟ ହରି ଏ ବିପଦ ସାଗରରୁ ଉଦ୍ଧାର କରନ୍ତି, ତେବେ ହିଁ ରକ୍ଷା; ନୋହିଲେ ଆଉ ଆମ୍ଭମାନଙ୍କର ଗତ୍ୟନ୍ତର ନାହିଁ । ହୁଃହୁ, ହୁଃହୁ, କି ଭୟଙ୍କର ମେଘଗର୍ଜ୍ଜନ ! କି ଭୟାନକ ବଜ୍ରନାଦ ! ତା ସଙ୍ଗେ ସଙ୍ଗେ ପୁଣି ମୁଷଳ ଧାରରେ ଶିଳା ବୃଷ୍ଟି । ଏହି ଶୁଣ, ଗୋପବାଳକ ଗଣ ପ୍ରାଣ ଆକୁଳରେ ଚିତ୍କାର କରୁଅଛନ୍ତି । ହାୟ ! ହାୟ ! କେଉଁ ଆଡ଼େ ଯିବା, କି ଉପାୟ କରିବା ? ବାପ କୃଷ୍ଣରେ ! ତୁ ଏ ମହାବିପଦ ସମୟରେ କୁଆଡ଼େ ଅଛୁ ? ତୋ ବିନା ଏ ବିପଦକାଳରେ ଗୋପକୁଳର ଉଦ୍ଧାରକର୍ତ୍ତା ଆଉ କେହି ନାହିଁ ।

(ବେଗେ ଜଣେକ ଗୋପଶିଶୁର ପ୍ରବେଶ)

ଗୋପଶିଶୁ — (ଉଚ୍ଚସ୍ୱରେ) ଗୋପବ୍ରଜ ! ଗୋପସ୍ତନ ! ଅଦ୍ଭୁତ ଘଟନା, ଅଲୌକିକ ଦୃଶ୍ୟ, ଆଉ ଗୋପ ଗୋପୀମାନଙ୍କର କୌଣସି ବିପଦ ନାହିଁ, ଆପଣମାନେ ସମସ୍ତେ ମୋ ସଙ୍ଗେ ଶୀଘ୍ର ଆସନ୍ତୁ । ଆମ୍ଭମାନଙ୍କର ବ୍ରଜସଖା ପ୍ରାଣ କହ୍ନାଇଁର ଐଶ୍ୱର୍ଯ୍ୟ ଲୀଳା ସ୍ୱ ଚକ୍ଷୁରେ ଦେଖିବେ ଆସନ୍ତୁ । ଜଳଧାରା, ଝଡ଼ବୃଷ୍ଟି, ବଜ୍ରପାତ, ଚଣ୍ଡବାତ, ପଡ଼ୁପଡ଼ୁ କି ଆଉ ଗୋକୁଳ ବାସୀଙ୍କର କିଛି ଭୟନାହିଁ ।

ନନ୍ଦ — କଅଣ ହେଉଛି, କଅଣ ହୋଉଛି, ? ମୋ ପ୍ରାଣ କୃଷ୍ଣ କେଉଁଠି ବାପ ? କି ଘଟନା ହୋଇଛି ଶୀଘ୍ର କହ ।

ବାଳକ—ମହାରାଜ ! ଆଉ କଅଣ କହିବ ? ସ୍ୱଚକ୍ଷୁରେ ଦେଖି ଆମ୍ଭେମାନେ ଅବାକ୍ ହୋଇଅଛୁଁ । ଆପଣଙ୍କ ପୁତ୍ର କୃଷ୍ଣ ସାମାନ୍ୟ ମନୁଷ୍ୟ ନୁହନ୍ତି, ସେ ସାକ୍ଷାତ୍ ନ'ସ୍ତ ମସ୍ତ ଭଗବାନ୍, ଏତେ ବଡ଼ ଗୋବର୍ଦ୍ଧନ ପର୍ବତଟାକୁ କ୍ଷଣକ ଭିତରେ ଉପାଡ଼ିକରି ବାମହାତ କାଣିଅଙ୍ଗୁଳିରେ ଗୋଟିଏ ଛତାପରି ଉପରକୁ ଟେକି ଅଛନ୍ତି, ଅସଂଖ୍ୟ ଗୋପ, ଗୋପୀ, ଅସଂଖ୍ୟ ଗାଈ ବାଛୁରୀ ଆଉ ଅନ୍ୟାନ୍ୟ ଜୀବଜନ୍ତୁମାନେ ସେହି ପର୍ବତ ତଳେ ନିର୍ଭୟ ଭାବରେ ରହି ଅଛନ୍ତି, ଆପଣମାନେ ସେହିଠାକୁ ଯିବାପାଇଁ କୃଷ୍ଣ ମୋତେ ପଠାଇଦେଲେ । ସେହି ମାୟାଧର ଶ୍ରୀହରିଙ୍କର ଅଜ୍ଞ ଅଲୌକିକ କାର୍ଯ୍ୟ ଦେଖିବେ ଆସନ୍ତୁ ।

ନନ୍ଦ—ଆଶ୍ଚର୍ଯ୍ୟ ! ଆଶ୍ଚର୍ଯ୍ୟ !! ଅତି ବିସ୍ମୟଜନକ ଘଟଣା । ଚାଲ, ଚାଲ, ଶୀଘ୍ର ଚାଲ । ହରିବୋଲ ! ହରିବୋଲ ! ହରିବୋଲ ।

(ଚଞ୍ଚଳରେ ସମସ୍ତଙ୍କ ପ୍ରସ୍ଥାନ)

ଯବନିକା ପତନ

## ଦ୍ୱିତୀୟ ଅଙ୍କ ସମ୍ପୂର୍ଣ୍ଣ



## ତୃତୀୟ ଅଙ୍କ ।

### ପ୍ରଥମ ଦୃଶ୍ୟ ।

ସ୍ଥାନ—ବୃନ୍ଦାବନ ପଥ ।

(ଗୀତ ଗାଇ ଗାଇ ବୀଣାବାଦନ ସହ ଦେବର୍ଷି ନାରଦଙ୍କ ପ୍ରବେଶ)

ରାଗିଣୀ ଭୈରବୀ ଝମ୍ପା ତାଳ ।

ରେ ଅବୋଧ ମନ, ଜପ ହରିନାମ,
ଗାଅରେ ରସନା ଗାଅ ଉଚ୍ଚସ୍ୱରେ ।
ପତିତ ପାବନ, ଶ୍ରୀମଧୁସୂଦନ,
ତାଙ୍କ ବିନା କିଏ ତାରିବ ସଂସାରେ ॥

ଢ଼ାଳିଦିଅ କୃଷ୍ଣପଦେ ମନ ପ୍ରାଣ,
ନ ଦେଖିବ ଆଉ ଶମନ ପ୍ରାଙ୍ଗଣ;
ପାପ-ତମରାଶି ହୋଇବ ଦହନ,
ଶ୍ରୀହରିଙ୍କ ନାମ ମାଳି କା ତେଜରେ । ୧ ।

(ପ୍ରଗତ) ଅହୋ ! ଧନ୍ୟ, ପ୍ରଭୁଙ୍କର ଅପାର ଐଶ୍ୱରିକ ଶକ୍ତି ଧନ୍ୟ, ଏହି ପରାକ୍ରମଶାଳୀ ସର୍ବଶକ୍ତିମାନ୍ ପରମପୁରୁଷଙ୍କର ପଦପ୍ରାନ୍ତରେ ଯେଉଁ ଚତୁର ଭକ୍ତ ମନପ୍ରାଣ ସମର୍ପଣ କରି ସମସ୍ତ ଜଞ୍ଜାଳରୁ ମୁକ୍ତ ହୋଇଅଛନ୍ତି, ସେହି ଭକ୍ତ ଚୂଡ଼ାମଣି ମହାପୁରୁଷହିଁ ଧନ୍ୟ । କାରଣ, କୌଣସି ପ୍ରକାର ସାଂସାରିକ ମୋହଜାଲରେ ପଡ଼ି ଆଉ ସେ ମୋହିତ ହେବନାହିଁ । ଆଜି ପ୍ରଭୁଙ୍କର ଅନନ୍ୟସାଧାରଣ କ୍ଷମତାର ପ୍ରକୃତ ପରିଚୟ ପାଇ ସମଗ୍ରଜଗତ ବିସ୍ମୟରସରେ ଆପ୍ଳୁତ ହେବ; ଦେବରାଜ ଇନ୍ଦ୍ରର ମନରୁ ସନ୍ଦେହ ସମ୍ୟକ ରୂପରେ ତୁଟିଯିବ ଓ ଏହି ଯଶୋଦାନନ୍ଦନ ଗୋପଶିଶୁ ବେଶଧାରୀ ଭଗବାନଙ୍କୁ ସର୍ବନିୟନ୍ତା ପରମପୁରୁଷ ବୋଲି ସ୍ୱୀକାରକରିବାକୁ ବାଧ୍ୟ ହେବ । ସାମାନ୍ୟ ପବନ ହିଲ୍ଲୋଳରେ ପ୍ରଶାନ୍ତ ସମୁଦ୍ର ଯେପରି ଭୀଷଣଭାବ ଧାରଣକରେ, ସେହିପରି ଦେବରାଜ ଇନ୍ଦ୍ରର ଏହି ମାୟା ପ୍ରଭାବରେ କ୍ରୁଦ୍ଧହୋଇ ଭଗବାନ ଯେଉଁ ଅଲୌକିକ କାର୍ଯ୍ୟର ଅନୁଷ୍ଠାନ କରିଛନ୍ତି, ତାହା ତାଙ୍କ ଭିନ୍ନ କାହାର ସାଧ୍ୟାୟତ୍ତ ନୁହେ । ନବନୀତକୁ ଜିଣି ସୁକୋମଳ କରପଲ୍ଲବରେ ଅଭ୍ରଭେଦୀ ଗୋବର୍ଦ୍ଧନଗିରିକି ଧାରଣ କରିବା କଣ ସହଜ ବ୍ୟାପାର ? ଭଗବାନଙ୍କ କୋପଦୃଷ୍ଟି ହେଲେ ତରଙ୍ଗ-ସଙ୍କୁଳ ମହାସିନ୍ଧୁ ସେ ଗୋଷ୍ପଦର ଆକାର ଧାରଣକରେ, ସୁମେରୁ ଶିଖର ବଲ୍ମୀକରେ ପରିଣତ ହୋଇପାରେ । ଏହା ବିଚିତ୍ର ନୁହେଁ । ଆଜି ପ୍ରଭୁଙ୍କ ବାମକରରେ ଗୋବର୍ଦ୍ଧନଗିରି ଧାରଣରୂପ ଅଲୌକିକ କାର୍ଯ୍ୟ ଦ୍ୱାରା ଜଗତ ସ୍ତମ୍ଭିତ ହେଲା, କେତେ କେତେ କୃଷ୍ଣ ପ୍ରେମିକ ଭକ୍ତଙ୍କ ହୃଦୟରେ ଭକ୍ତିର ଖରସ୍ରୋତ ନଦୀ ପ୍ରବାହିତ ହେଲା, ପୁଣି କେତେ କେତେ ନୀରସ ଅନ୍ତର, ପାଷଣ୍ଡଙ୍କ

ଦର୍ପଣ ସମ ଅନ୍ତର ଅନେକ ପରମାଣରେ ପରିବର୍ତ୍ତିତ ହୋଇ ଜ୍ଞାନାଲୋକରେ ଅଲୌକିକ ହୋଇ ଉଠିଲା, ଫଳତଃ କିନ୍ତୁ ବିଶେଷ ଉଦ୍ଦେଶ୍ୟ ବ୍ୟତୀତ ସେହି ସର୍ବବ୍ୟାପକ ପରମପୁରୁଷ କେବେ କୌଣସି କାର୍ଯ୍ୟକ୍ଷେତ୍ରରେ ଅବତୀର୍ଣ୍ଣ ହୁଅନ୍ତିନାହିଁ; ତେବେ ସେହି ଉଦ୍ଦେଶ୍ୟ ନିର୍ଣ୍ଣୟକରିବା ଜ୍ଞାନୀଗଣଙ୍କର ଅନନ୍ୟ-ସାଧାରଣ ପ୍ରତିଭାର ବହିର୍ଭୂତ, ସୁତରାଂ କ୍ଷୀଣପ୍ରାଣ ମନୁଷ୍ୟଙ୍କ ପକ୍ଷରେ ଯେ, ଏକାନ୍ତ ଦୁର୍ଜ୍ଞେୟ, ତାହା କହିବା ବାହୁଲ୍ୟ ।

ଆହା ! ଭାଗ୍ୟବତୀ ଯଶୋଦାର ସୌଭାଗ୍ୟର ଆଉ ଇୟତ୍ତା ନାହିଁ, କାହିଁକି ନା ? ଯାଙ୍କ ଯଜ୍ଞର ଯଜ୍ଞେଶ୍ୱର, ଗୋପୀମାନଙ୍କର ଜୀବନସର୍ବସ୍ୱ, ଶ୍ରୀକୃଷ୍ଣଙ୍କୁ ପୁତ୍ରରୂପରେ ପ୍ରତିପାଳନ କରୁଅଛି; କିନ୍ତୁ ସ୍ନେହବଶରେ ଭଗବାନଙ୍କ ଐଶ୍ୱର୍ଯ୍ୟ ଦର୍ଶନ ବା ଭଗବା-ନଙ୍କ ବିଶ୍ୱମୋହିନୀ ମାୟାର ଅପ୍ରତିହତ ପ୍ରଭାବରେ ପ୍ରକୃତ ତତ୍ତ୍ୱ ବୁଝିପାରୁନାହିଁ, ତା ଜଣାଇବାରହିଁ ସମ୍ଭାବନା ; କାରଣ ପ୍ରଭୁଙ୍କ ଲୀଳାମାଧୁର୍ଯ୍ୟର ପ୍ରକୃତ ମର୍ମ୍ମହୃଦୟର ସାଧକର ହୃଦୟଙ୍ଗମ କରିବାର ସାଧ୍ୟନାହିଁ । ଅଳ୍ପମତି ନାରୀ ହୋଇ କିପରି ତାହା ବୁଝିବ? କାଚଯହିଁ ବହୁମୂଲ୍ୟ ମାଣିକ୍ୟକୁ ସାମାନ୍ୟ ପ୍ରସ୍ତର ଜ୍ଞାନରେ ଜଗତ୍ପିତାଙ୍କୁ ପୁତ୍ର-ଭାବ ପରମସୁଖରେ ସ୍ତନପାନ କରାଉଛି । ସଂସାରମଧ୍ୟରେ ଏପରି କା'ର ସାଧ୍ୟ ଯେ ଭଗବାନଙ୍କ ସେହି ମାୟାବନ୍ଧନକୁ ଛିନ୍ନ କରିପାରିବ ? ସୂତ୍ରରେ ଗ୍ରଥିତ ପୁତ୍ତଳିକା ସମ ଜୀବନକୁ ଏହି ସଂସାର ରଙ୍ଗ-ଭୂମିରେ ସେହି ଦୟାମୟ ନିୟତ ନୃତ୍ୟ କରାଉଛନ୍ତି; ଯେତେ-ବେଳେ ଯା ପ୍ରତି ତାଙ୍କର କୃପାହୁଏ, ସେତେବେଳେ ସେହି ଦୁଚ୍ଛେଦ୍ୟ ବନ୍ଧନକୁ ଛିନ୍ନ କରିପାରେ । ଏହି ଯେ ସ୍ୱୟଂ ଭଗବାନ ଗୋବର୍ଦ୍ଧନଗିରିକି ଛତ୍ର ଧରିଲାପରି ଟେକି ରହିଛନ୍ତି ଏବେ ମୁଁ ନିଜେ ଅନୁରାଗରେ ଭରି ପ୍ରଭୁଙ୍କର ଏ ଅଲୌକିକ ଲୀଳା ଦର୍ଶନ କରିବି (ଯାଏଁ)—

(ଅନୁରାଗରେ ପ୍ରସ୍ଥାନ)

ଦୃଶ୍ୟପରିବର୍ତ୍ତନ



## ତୃତୀୟ ଅଙ୍କ ।

## ଦ୍ୱିତୀୟ ଦୃଶ୍ୟ ।

(ଗୋବର୍ଦ୍ଧନଗିରି ନିକଟ ସମତଳଭୂମି)

(ଥରଥର ହୋଇ ଗୋପଗୋପିନୀ ଗଣ ଧାଇଁଥିବା ଅବସ୍ଥା)

ସନା—ଆରେ ଗଦା ! ଚଞ୍ଚଳ ଧାଇଁଆରେ, ଚଞ୍ଚଳ ଧାଇଁଆ ।

ଗଦା—ହଦାଭାଇ ! ରହରେ ରହ, ମୁଁ ଦଉଡ଼ିପାରୁନାହିଁ, ମୋତେ ସଙ୍ଗରେ ନେଇରେ ଭାଇ ! ମୋତେ ସଙ୍ଗରେ ନେ ।

ହଦା—ଆରେ ଗଦା ! ରହରେ ଟିକଏ ରହ ମୋ ଗଣ୍ଠି, ସମସ୍ତେ ସଙ୍ଗହୋଇ ଯିବା ଟିକଏ ରହ, ରହ ।

ଗଦା—ଆରେ ଦେଖୁନାହୁଁ ? ଉପର କୁଆପଥର ମାଡ଼ ହେଉଛି ? ଆଉ ରହିବ ବୋଲି କଅଣ କହୁଛୁରେ, ବେଗି ବେଗି ଧାଇଁଆ ଧାଇଁଆ ।

ହଦା—ଆରେଭାଇ ! ଏହି ଦେଖରେ, ଗୋବର୍ଦ୍ଧନ ଗିରିଟା ଉପର କୃଷ୍ଣ ହାତରେ ଛତାପରି ରହିଛି ଓହୋ ! କି ଆଶ୍ଚର୍ଯ୍ୟ ! ଦଉଡ଼ ଆହୁରେ ଭାଇ, ବେଗେ ଦଉଡ଼ ଆସ ।

ଗଦା—ହେଇ ଦେଖରେ ଭାଇ ! ଗୃହଦିଗରୁ ଗୋପଗୋପୀମାନେ ଉପର ଧାଇଁଛନ୍ତି । ଆସରେ ଭାଇ, ଆଗ ଆମେମାନେ ଗିରି-ତଳେ ରହିଯିବାରେ ଚଞ୍ଚଳ ଦଉଡ଼ ଆସ ।

ନଧିଆ—ଆରେଭାଇ ! ମୁଁ ଦଉଡ଼ ପାରୁ ନାହିଁରେ ରହିଥାଅ, ରହିଥାଅ, ମୁଁ ତମମାନଙ୍କ ପଛକୁ ଲାଗିଯାଏଁ (ଦଉଡ଼ନ୍ତି)

ଢିଙ୍କିଆ—ଚାଲରେ ନଧିଭାଇ ! ଦଉଡ଼ିଚାଲ ଦଉଡ଼ିଚାଲ !

( ସେମାନଙ୍କର ପ୍ରସ୍ଥାନ )

ପଟ ପରିବର୍ତ୍ତନ



# ତୃତୀୟ ଅଙ୍କ ।

## ତୃତୀୟ ଦୃଶ୍ୟ ।

### ଗୋବର୍ଦ୍ଧନ ଗିରି ।

(ଶ୍ରୀକୃଷ୍ଣ ବାମହସ୍ତ କନିଷ୍ଠାଙ୍ଗୁଳି ଅଗ୍ରରେ ଗୋବର୍ଦ୍ଧନ ପର୍ବତକୁ ଧାରଣକରି ତ୍ରିଭଙ୍ଗ ଠାଣିରେ ଦଣ୍ଡାୟମାନ ଓ ଗୋପବାଳକ ମାନେ ବାଡ଼ି, ଲଉଡ଼ି, ଠେଙ୍ଗା ଓ ଛିଞ୍ଚ ଦେଇ ନାନା ଭଙ୍ଗିରେ ଦଣ୍ଡାୟମାନ ପୂର୍ବକ ନୃତ୍ୟ ଓ ଗାନ ଅଭିନୟ ।)

### ଗୀତ ।

(ତାଳ ଏକତାଲି ।)

(ଜୟ) କାଳନ୍ଦୀ କୂଳିଆ, କଦମ୍ବ ମୂଳିଆ,
(ଜୟ) ଗୋବର୍ଦ୍ଧନଗିରି ତୋଳିଆ ହେ ।

ନବଜଧୂଳିସ୍ଥ ଶ୍ୟାମ ଗୋରଜ ବୋଳିଆ,
କାଳିୟ ଦଳିଆ, ଗୁରୁ ପୀତଦୁକୂଳିଆ,
ରଙ୍ଗ କାଇଁଛ ମାଳିଆ, ଶିଖଣ୍ଡ ଚୂଳିଆ,
ଗୋପାଳ ମେଳିଆ, ବନମାଳିଆ ହେ । ୧ ।

ଘନଶ୍ୟାମଳିଆ, ଜନୁ ମନ ବଶୋଳିଆ,
ନାଦ ବଂଶାଳିଆ ନବରଙ୍ଗିଆ କାଳିଆ,
ଗୋଧନଗୁଳିଆ କାହ୍ନୁ, ଗୋକୁଳ ପାଳିଆ,
ଶ୍ରୀକର ତାଳିଆ, ଧୃତଶୈଳିଆ ହେ । ୨ ।

(ନନ୍ଦ, ଉପନନ୍ଦ ଓ ଅନ୍ୟାନ୍ୟ ଗୋପମାନଙ୍କ ପ୍ରବେଶ)

ନନ୍ଦ—ଆହା ! ଧନ୍ୟ ଧନ୍ୟ ! ଲୀଳାମୟ ମାୟା ଧନରେ ! ବହୁ ଭାଗ୍ୟରୁ ଏ ଅଭାଗା ମହାପାପୀ ନନ୍ଦର କେଉଁ ପୁଣ୍ୟବଳରେ ପୁତ୍ରରୂପେ ଜନ୍ମିଥିଲୁ । ମୁଁ ଅଧମ, ଏତେଦିନ ପର୍ଯ୍ୟନ୍ତ ଅଜ୍ଞାନ

ଅହଙ୍କାରରେ ମୁଗ୍ଧହୋଇ ତୋତେ ଚହ୍ନିପାରି ନଥିଲି ।
ଆଜ ମୋର ସେହ ମହାଭ୍ରମ ବଦୂରତ ହେଲା, ଛଳନାମୟ !
ଭକ୍ତପ୍ରତ ତୋର ଏତେ ଦୟା ! ଧନ୍ୟ ତୋର ଲୀଳା, ଖେଳା ।
(ଉପନନ୍ଦ ପ୍ରତ) ଶ୍ରୀର ଉପନନ୍ଦ ! ଆଉ ଶ୍ରୀର ଇନ୍ଦ୍ରଙ୍କୁ ଭୟ
କରିବାର କଣ୍ଟୁ କାରଣ ନାହିଁ । ଗାଅ, ଗାଅ, ବ୍ରଜଶିଶୁଗଣ !
ତେମାନଙ୍କେ ଗାଅ ଅଜ ଶ୍ରୀକୃଷ୍ଣର ଗୁଣ, ହେଉ ଭକ୍ତମାନ-
ଙ୍କର କର୍ଣ୍ଣ ଚରିତାର୍ଥ । ଗାଅ ଏବେ ସେହ ପ୍ରେମ-ମଧୁର
ସଙ୍ଗୀତ, ନାଚ ନାଚ ଢ଼ଳ ଢ଼ଳ ନାଚରେ ସରବେ ।

ବାଳକ ମାନଙ୍କ

## ଗୀତ ।

(ବୃତୀୟ ପଦ)

କାରତ ବଶାଳିଆ ହେ ରଙ୍ଗ ଜାମୁଡ଼ାଳିଆ,
ଚନ୍ଦନ ବୋଳିଆ ଅଙ୍ଗ ହେ ଢ଼ଗଢ଼ମାଳିଆ,

ପ୍ରେମ ପ୍ରୀତ-ଥାଳିଆ ସୁରସନ ଉସ୍ତ୍ରକିଆ,
ସର ଜଞ୍ଜାଳିଆ, ଭବ ଖେଳିଆ ହେ । ୩ ।

(ଜୟ) କାଳନ୍ଦୀ କୂଳିଆ, କଦମ୍ବ ମୂଳିଆ,
(ଜୟ) ଗୋବର୍ଦ୍ଧନ ଗିରି ତୋଳିଅ ହେ । ୪ ।

( ସମସ୍ବରେ ଗାନ ଓ ନୃତ୍ୟ )

(ଇନ୍ଦ୍ରଙ୍କ ପ୍ରବେଶ)

ଇନ୍ଦ୍ର—(କରଯୋଡ଼) କ୍ଷମାକର ! କ୍ଷମାକର ! ଗୋକୁଳ ବହାର !
ମାୟାମୟ ! ଜଗଦୀଶ ! ହେ ବ୍ରଜବାଳକ, ଦେବଙ୍କ ଦୁର୍ଗତ
କରିବାକୁ ବନେ ଚର, ମାୟାବଳେ ଜନମିଛ ମର୍ତ୍ତ୍ୟେ
ଦୟାମୟ ! ଭ୍ରମାନ୍ଧ ଦେବେନ୍ଦ୍ର ମୁହିଁ ଐଶ୍ୱର୍ଯ୍ୟ ଗରବେ,
ଅପମାନ ଦେଇଅଛି ନଜବୁଦ୍ଧି ଦୋଷେ । ଅଦ୍ଭୁତ ଶକତ
ତବ କର ଦରଶନ, ମାଗୁଅଛି କ୍ଷମା ତୁମ୍ଭ ! କରି ମୁଁ

ପ୍ରାର୍ଥନା, ଅଜ୍ଞାନତ ବଂଶୀପାଣି ନିକୁଞ୍ଜ ମଣ୍ଡନ, ହୃଦୟଦର୍ପେ ଯାଉଛି ମୁଁ ବ୍ରହ୍ମାଙ୍କ ନିକଟେ, ତୁମ୍ଭର ଅପୂର୍ବଲୀଳା ଅତୁଳ ମାଧୁରୀ, ସେକଥା ମୁଁ ଶୁଣିଥିଲି ପିତାମହମୁଖୁଁ, ତେଣୁ ଘୁଞ୍ଚିଅଛି ମମ ମନର ଅହଙ୍କାର, ନିଜଗୁଣେ କ୍ଷମାକରି ଅଧମ ଚାହେଁବ, ମୁହିଁ ଇନ୍ଦ୍ର, କ୍ଷମା ପାଇଁ ଶ୍ରୀପଦ୍ମଙ୍କ ପାଖେ ।

(ଶ୍ରୀକୃଷ୍ଣଙ୍କ ପଦତଳେ ପତନ)

ଶ୍ରୀକୃଷ୍ଣ—ଉଠ, ଉଠ, ଦେବ ଶଚୀପତି ! ମୁହିଁ ତବ ଚିରଦାସ, ଏ କଣ ହେ ଆଜ ! ସାତଦିନ ବୃଷ୍ଟି ପରେ ଏକି ବିପତ୍ତି !

ଇନ୍ଦ୍ର—(ଭକ୍ତିଭରେ)ଶରଣାଗତପାଳକ ହେ ପ୍ରଭୋ ! ଆଉ କାହିଁକି ଏ ଦାସକୁ ଲଜ୍ଜା ଦେଉଅଛ, ମୁଁ ପ୍ରକୃତ ଶ୍ରୀଚରଣରେ ଅପରାଧୀ ହୋଇଛି । କିନ୍ତୁ ନିଜଗୁଣେ କ୍ଷମାକରି ନିଜର ଦୟାଳୁ ମହିମା ମଧୁନାମ ସାର୍ଥକ କର ପ୍ରଭୁ ! ମାୟାଧର ! ମୁଁ କେବଳମାତ୍ର ଜଗତ ମଧ୍ୟରେ ପ୍ରସିଦ୍ଧ କରିବା ଅଭିପ୍ରାୟରେ ଏହି ଗୁରୁତରଲୀଳା ବିସ୍ତାର କରିଥିଲି; ମୋର ଏହି କାର୍ଯ୍ୟ ସଂସାର ମଧ୍ୟରେ ପ୍ରଭୁଙ୍କର ଗୋଟିଏ ଅକ୍ଷୟ ଗୌରବସ୍ତମ୍ଭ ପ୍ରୋଥିତ ହେଲା । ଯେତେଦିନ ପର୍ଯ୍ୟନ୍ତ ଚନ୍ଦ୍ର ସୂର୍ଯ୍ୟ ଉଦୟ ଅସ୍ତ ହେଉ ଥିବେ, ସେତେଦିନାବଧି ଏହି ସ୍ତମ୍ଭ ଅକ୍ଷୁର୍ଣ୍ଣ ଭାବରେ ବସିକି ଉଠିବ, ଅଦୂରଦର୍ଶୀ ବାଳକ ଯେପରି ପିତାମାତାଙ୍କ ନିକଟରେ ଅପରାଧକରି କ୍ଷମାଭିକ୍ଷାକରେ, ମୁଁ ସେହିପରି ଆପଣଙ୍କ ଶ୍ରୀ ଚରଣରେ ଶରଣ ନେଇ ଭିକ୍ଷା ପ୍ରାର୍ଥନା କରୁଛି, ପ୍ରଭୁ ! ଏ ଦାସପ୍ରତି ପ୍ରସନ୍ନ ହୁଅନ୍ତୁ ।

## ସ୍ତବ

ଜୟ ଯଦୁପତି, ଅଗତିର ଗତି,
ଜୟ ଜଗତ ଈଶ୍ୱର ।
ଜୟ ହେ କେଶବ, ଜୟ ହେ ମାଧବ,
ମୋହନ ମୁରଲୀ ଧର ।

ଜୟ ଜନାର୍ଦ୍ଦନ, ଚଉର ଗଞ୍ଜନ,
ଜୟ ଜୟ ଈଶ୍ୱର,
ଜୟ ବୃନ୍ଦାବନ, ନନ୍ଦନ ମଦନ,
ଜୟ ଯଶୋଦା କୁମର ।

(ଜୟ ବ୍ରଜ ଜୀବନ)

ଜୟ ଶ୍ରୀ ମଧୁସୂଦନ ଆରତ ହରଣ,
ଜୟ ଦୀନଦୟାମୟ ପତିତ ପାବନ,
ଜୟ ଶରଣ ରକ୍ଷଣ ମନ ମୋହନ ॥

(ସ୍ୱବାବେଶେ କରଯୋଡ଼ି ଇନ୍ଦ୍ରକା)

ଶ୍ରୀକୃଷ୍ଣ—ଦେବରାଜ ! ତୁମ୍ଭ ବିନୟଗର୍ଭ ବଚନରେ ମୁଁ ଅତିଶୟ ପ୍ରୀତ ହେଲି, ସୁଶୀତଳ ଜଳ ବର୍ଷଣରେ ପ୍ରଚଣ୍ଡ ଅଗ୍ନି ଯେପରି ନିର୍ବାଣ ହୁଏ, ସେହିପରି ଏବେ ମୋର ସମସ୍ତ କ୍ରୋଧ ଦୂରହେଲା । ଏଥର ତୁମ୍ଭ ଜ୍ଞାନଚକ୍ଷୁ ଯାହା ଉନ୍ମୀଳିତ ହୋଇଅଛି, ଏହାହିଁ ଯଥେଷ୍ଟ । ଆଉ କେବେହେଲେ ଏପରି ଦୁଃସାହସିକ କାର୍ଯ୍ୟ କରିବ ନାହିଁ । ଅଗ୍ନିରେ ଦଗ୍ଧ ହେଲେ ସୁବର୍ଣ୍ଣ ଯେପରି ଉଜ୍ଜଳ ହୁଏ, ସେହିପରି କୁକାର୍ଯ୍ୟ ଅନୁଷ୍ଠାନ କଲା ପରେ ଯଦି ତାହାର ଅନୁତାପ ଆସି ଉପସ୍ଥିତ ହୁଏ, ତ' ହେଲେ ସଙ୍ଗେ ସଙ୍ଗେ ତା'ର ପାପରୁ ଅନେକ ଅଂଶ ପ୍ରାୟଶ୍ଚିତ୍ତ ହୋଇ ଯାଏ, ତୁମ୍ଭେ ଅଦ୍ୟାପି କ୍ରୋଧର ବଶୀଭୂତ ହୋଇ କ୍ଷମତାର ଅତୀତ ବିଷୟରେ ହସ୍ତକ୍ଷେପ କରିଥିଲେ, ସେଥିପାଇଁ ସମ୍ୟକ୍ କୃତକାର୍ଯ୍ୟ ହୋଇପାରିଲ ନାହିଁ । ଯାହାହେଉ ଏବେ ତୁମ୍ଭର ସମସ୍ତ ଅପରାଧ କ୍ଷମା କଲି, ତୁମ୍ଭେ ସ୍ୱଚ୍ଛନ୍ଦ ମନେ ଆପଣା ଭୁବନକୁ ଗମନକର । ଦୁରାଶାର ଦାସ ହୋଇ ଆଉ କେବେହେଲେ ଦୁର୍ବଳ ଦରୁବରେ ସ୍ୱୀୟ ଅସୀମ ଶକ୍ତି ପରିଚାଳନା କରିବନାହିଁ ।

ଇନ୍ଦ୍ର—ହେ ଅଜ୍ଞା ଦୟାମୟ ! ପ୍ରଭୁ ! ଏବେ ଏହି ଦେବଙ୍କ ପାଦ-ପଦ୍ମରେ ପ୍ରଣାମକରି ବିଦାୟ ହେଉଛୁ ।

(ଇନ୍ଦ୍ରଙ୍କ ପ୍ରସ୍ଥାନ ସମୟେ ବ୍ରଜବାଳକ ଗଣ ସମସ୍ୱରେ)

ଜୟ ବ୍ରଜଯୁବରାଜ ଶ୍ରୀକୃଷ୍ଣଚନ୍ଦ୍ରଙ୍କର ଜୟ ।

ଜୟ ବୃନ୍ଦାବନଚନ୍ଦ୍ର ଯଶୋଦାଦୁଲାଳ ନନ୍ଦନନ୍ଦନଙ୍କ ଜୟ

ଜୟ ନଟନୋଦ ବିହାରୀ ଶ୍ୟାମସୁନ୍ଦରଙ୍କ ଜୟଜୟ ! ଗୋପୀନାଥଙ୍କର ଜୟ

(ଜୟଗାଥା)

ଗର୍ଜ୍ଜନସ୍ୱର—ତାଳ ଝୋଫା ।

ଜୟ ଜୟ ପ୍ରାଣସଖା ଗିରିବରଧାରି ।
ଜୟ ଗୋକୁଳ ମଣ୍ଡନ ଦେବ ଦଇତ୍ୟାରି ।
ଜୟ ବୃନ୍ଦାବନ ଚନ୍ଦ୍ର କମଳଲୋଚନ ।
ଜୟ ଦୁଃଖ ନାଶନା ହେ ସନ୍ତାପ ମୋଚନ ॥
ଜୟ ଇନ୍ଦ୍ରଗର୍ବ ହାରୀ ମାରଦବରନ ।
ଜୟ ନଗାନ ନାହୁଁଆ ମାନସମୋହନ ।

(ଜୟ ହେ ! ଜୟ ହେ !

ଗୋପିଙ୍କ ଜୀବନଧନ ଜୟ ହେ ଜୟ ହେ ।
ଭକତ ମନରଞ୍ଜନ ଜୟ ହେ ଜୟ ହେ ।
ଗୋକୁଳର ନିତ୍ୟ ଧନ ଜୟ ହେ ଜୟ ହେ ।

(ସମସ୍ତରେ ଗାନ ଓ ଉଦଣ୍ଡନୃତ୍ୟ ଅଭିନୟ)

**ଯବନିକା ପତନ ।**

ଇତି ଗୋବର୍ଦ୍ଧନ ଲୀଳା ନାଟକ ସମାପ୍ତ



Printed by B S. Das, the Mukur Press Cuttack.

# ଶ୍ରୀ ଶ୍ରୀ ରାଧାଗୋବିନ୍ଦ-ରାସଲୀଳା ମଣ୍ଡଳୀର

## ( ନାଟକାବଳୀ )



ଶ୍ରୀକୃଷ୍ଣଙ୍କ ଜନ୍ମଲୀଳା ନାଟକ
ପ୍ରଥମଖଣ୍ଡ ଟ ୦ ।/
ଏକକ ଦ୍ୱିତୀୟ ଖଣ୍ଡ ଟ ୦ ।
ବାଲ୍ୟଲୀଳା ନାଟକ ୧ମ ଓ
୨ୟ ଭାଗ ଏକତ୍ର ଟ ୦ ୳
ପୌଗଣ୍ଡ ଲୀଳା ନାଟକ ଟ ୦ ।୵
ଦାନଲୀଳା ଓ
ନୌକାବିହାର ନାଟକ ଟ ୦ ୷
ବସ୍ତ୍ର ହରଣ ଲୀଳା ,, ଟ ୦ ୶
କାଳୀୟଦମନ ନାଟକ ଟ ୦ ୶
ଗୋବର୍ଦ୍ଧନ ଲୀଳା ନାଟକ ଯନ୍ତ୍ରସ୍ଥ
ବତ୍ସ ହରଣ ନାଟକ ଟ ୦ ।
ଶରତ୍ ରାସ (ନାଟକ) ଟ ୦ ।/
ରାସଲୀଳା (ଗୀତାଭିନୟ) ଟ ୦ ।୶
ନବାନୁରାଗଲୀଳା ,, ଟ ୦ ୷
ଝୁଲଣ (ଗୀତାଭିନୟ) ଟ ୦ ୷
ନବାନୁରାଗ (ନାଟକ) ଟ ୦ ।
ଚନ୍ଦ୍ରାବଳୀ (ନାଟକ) ଟ ୦ ।
ରାଧୋନ୍ମାଦ ଦଶା (ନାଟକ) ଟ ୦ ୶୬
ଦୁରନ୍ତ ମାନ (ନାଟକ) ଟ ୦ ।

ଦୁର୍ଜ୍ଜୟମାନ (ନାଟକ) ଟ ୦ ।
ମାନ ଭଞ୍ଜନ (ନାଟକ) ଟ ୦ ।
କଳଙ୍କ ଭଞ୍ଜନ (ନାଟକ) ଟ ୦ ।
କୃଷ୍ଣ କାଳୀ ( ନାଟକ ) ଟ ୦ ୶
ମାନ ମିଳନ (ନାଟକ) ଟ ୦ ।
ଅକ୍ରୂର ସମ୍ବାଦ (ନାଟକ) ଟ ୦ ।
ଦୋଳଲୀଳା (ନାଟକ) ଟ ୦ ୶
ରାଇ ରାଜା (ନାଟକ) ଟ ୦ ୶
ଗୋଷ୍ଠଲୀଳା (ନାଟକ) ଟ ୦ ।
କିଶୋର ଚନ୍ଦ୍ର (ନାଟକ) ଟ ୦ ୶
ବସନ୍ତ ଲୀଳା (ନାଟକ) ଟ ୦ ।
ସୁବଳ ମିଳନ (ନାଟକ) ଟ ୦ ୷
ବସନ୍ତ ବିହାର ନାଟକ ଟ ୦ ।
ପ୍ରେମବିଳାସ ନାଟକ ଟ ୦ ।
ବିଦଗ୍ଧମାଧବ (ନାଟକ) ଟ ୧ (
ଗୋଷ୍ଠବିହାର (ନାଟକ) ଟ ୦ ୷
ଘୋଷଯାତ୍ରା (ନାଟକ) ଟ ୦ ୷
ମଥୁରାଯାତ୍ରା (ନାଟକ) ଟ ୦ ।
ବ୍ରଜବର୍ଣ୍ଣନ (ନାଟକ) ଟ ୦ ।
କଂସବଧ (ନାଟକ) ଟ ୦ ୳

ଏକମାତ୍ର ପ୍ରାପ୍ତି ସ୍ଥାନ
ଦାଶରଥି ପୁସ୍ତକାଳୟ



ପୋଃ ଅଃ ବୁଢନଗୌକ
ବାଲୁବଜାର—କଟକ ।